# ଜଳସଂପଦ ଓ ସାମ୍ରାଜ୍ୟବାଦ



ବିନୋଦ

ଅଗ୍ରଗାମୀ
କାଶୀପୁର

# ଜଳସମ୍ପଦ ଓ ସାମ୍ରାଜ୍ୟବାଦ

## ଜଳର ସ୍ଥିତି ଓ ଦୁର୍ଗତି ସଂକ୍ରାନ୍ତ ପ୍ରବନ୍ଧମାଳା

**ବିନୋଦ**

ଅଗ୍ରଗାମୀ
କାଶୀପୁର

# ଜଳସମ୍ପଦ ଓ ସାମ୍ରାଜ୍ୟବାଦ

## ଜଳର ସ୍ଥିତି ଓ ଦୁର୍ଗତି ସଂକ୍ରାନ୍ତ ପ୍ରବନ୍ଧମାଳା

ଲେଖକ: ବିନୋଦ

ସମ୍ପାଦନା ସହାୟତା: ବିମଳ ପ୍ରସାଦ

ପ୍ରକାଶକ: ଅଗ୍ରଗାମୀ
କାଶୀପୁର - ୭୬୫ ୦୧୫
ରାୟଗଡ଼ା ଜିଲ୍ଲା, ଓଡ଼ିଶା

ପ୍ରଥମ ପ୍ରକାଶ: ଫେବ୍ରୁଆରୀ ୨୦୦୭

ମୁଦ୍ରଣ: ଶିକ୍ଷାପ୍ରକାଶନୀ
୨୬୬, ଜଗନ୍ନାଥବିହାର, ରୋଡ୍ - ୧
ବରମୁଣ୍ଡା, ଭୁବନେଶ୍ୱର - ୭୫୧୦୦୩
ଫୋନ୍: ୦୬୭୪ - ୨୫୫୨୦୨୪

ମୂଲ୍ୟ: ୪୦/- (ଚାଳିଶ ଟଙ୍କା ମାତ୍ର)

# JALASAMPADA 'O' SAMRAJYABADA

## Essays on water and related crisis

By: Binod

Editing Assistance: Bimal Prasad

Published by: Agragamee
Kashipur - 765 015
Rayagada District, Orissa

First Publication: February 2007

Printed at: Siksha Prakashani
266, Jagannathvihar, Road-1
Baramunda, Bhubaneswar - 751 003
Phone: 0674 - 2552024

Price: 40/- (Rupees Fourty only)

# ମୁଖବନ୍ଧ

'ଜଳ ହିଁ ଜୀବନ' । ଖୁବ୍ ପୁରୁଣା କଥାଟିଏ । ସମସ୍ତେ ଜାଣନ୍ତି ଓ ବୁଝନ୍ତି । ଭାରତୀୟ ଭାଷା ବିଭବ ଅନୁସାରେ 'ଜଳ'ର ଅନ୍ୟ ନାମ 'ଜୀବନ' । କେଉଁ ଅନାଦି କାଳରୁ ଭାରତୀୟ ସାହିତ୍ୟ ଓ ସଂସ୍କୃତିରେ ଏହି ଦର୍ଶନ ମାନ୍ୟତା ପାଇ ଆସିଛି । ବହୁତ ବିଳମ୍ବରେ ହେଲେ ସୁଦ୍ଧା 'ବିଜ୍ଞାନ' ଏହାକୁ ସ୍ୱୀକାର କଲା ଭଳି ଅନେକ ସତ୍ୟର ସନ୍ଧାନ କରିଚାଲିଛି । ଭାରତରେ ମୁନି ଋଷିମାନଙ୍କ ସିଦ୍ଧାନ୍ତ ଯେ ବିଜ୍ଞାନ ସମ୍ମତ, ଏହା ପ୍ରମାଣିତ ହେବାରେ ଲାଗିଛି । କଥିତ ଓଡ଼ିଆରେ 'ଜଳ'ର ଅନ୍ୟ ନାମ 'ପାଣି' । ପୃଥିବୀର ଆୟତନର ପ୍ରାୟ ତିନି ଭାଗରୁ ବେଶୀ ଜଳଭାଗ ଓ ଅବଶିଷ୍ଟ ସ୍ଥଳ ଭାଗ । ଅର୍ଥାତ୍ ତିନିଭାଗ ପାଣି ଓ ଏକ ଭାଗ ମାଟି । କିନ୍ତୁ ମାଟି ଉପରେ ତିଷ୍ଠିଥିବା ଜୀବଜଗତ (ଉଭୟ ପ୍ରାଣୀ ଜଗତ ଓ ଉଦ୍ଭିଦ ଜଗତ)ର ମୁଖ୍ୟତଃ ପାନ, ସ୍ନାନ, ରନ୍ଧନ ଓ ସେଚନ ପାଇଁ ସେହି ତିନିଭାଗ ପାଣି ଗୋଟାପଣେ ଅଦରକାରୀ । କାରଣ ତାହା ଲୁଣିପାଣି ବା ଖାର ପାଣି । ସ୍ଥଳଭାଗର ଜୀବଜଗତ ଓ ମାନବ ସଭ୍ୟତା ପାଇଁ ଦରକାର ମଧୁର ଜଳ ବା ପାଣି । କିନ୍ତୁ ଏହାର ପରିମାଣ ଖୁବ୍ ସୀମିତ । ତେଣୁ ମାଟି ଉପରେ ଥିବା ପ୍ରତିଟି ଜୀବର 'ଜୀବନ' ଭାରୀ ସଂଘର୍ଷମୟ । ସମ୍ଭବତଃ ଏହା ହିଁ ଜୀବସୃଷ୍ଟିର ସବୁଠୁ ବେଶୀ ରହସ୍ୟମୟ ଲକ୍ଷଣ ।

ଏହି ଲକ୍ଷଣ ଏବେ ଏକ ଆହ୍ୱାନ ହୋଇ ଠିଆ ହୋଇଛି । 'ପାଣି' ଆଉ ମୁକ୍ତ ପ୍ରାକୃତିକ ସଂପଦ ହୋଇ ରହିନାହିଁ । କେଉଁ ପାଣି ମଣିଷ ଦେହରେ ଯିବ ଓ କେଉଁ ପାଣି ମଣିଷକୁ ନୀରୋଗ ରଖିବ- ଏହା ଉପରେ ହେଉଥିବା ଗବେଷଣାତ୍ମକ ସିଦ୍ଧାନ୍ତ ଏହି ଆହ୍ୱାନକୁ ବଢ଼ାଇବାରେ ଲାଗିଛି । ଶିକ୍ଷା ଓ ସଚେତନତା ଯେତିକି ବଢୁଛି- ଏ ଆହ୍ୱାନ ସେତିକି ସ୍ପଷ୍ଟ ହେଉଛି । ଓଡ଼ିଶାର ଜଳଖିଆ ଦୋକାନ ଓ ଭୋଜନାଳୟର ମାଗଣା ପାଣି ଉପରେ ଜନତାଙ୍କ ଭରସା ରହୁନାହିଁ । ଜରି ପ୍ୟାକେଟ୍‌ରେ ମିଳୁଥିବା ଛଣାପାଣି କିଣି ପିଇବାର ଅଭ୍ୟାସ ଓଡ଼ିଶାର ଦକ୍ଷିଣାଞ୍ଚଳରେ ଏକ ଜୀବନଧାରା ହୋଇଗଲାଣି । ଏହା ଏକ ମାମୁଲି ସୂଚନା ମାତ୍ର । ଏହି ବହିରେ ସାରା ପୃଥିବୀର ବିଭିନ୍ନ ପ୍ରାନ୍ତରୁ ସାଉଁଟା

ହୋଇଥିବା ଏଭଳି ଅନେକ ଅନୁଭୂତି ସ୍ଥାନ ପାଇଛି । ତାହାକୁ ପଢ଼ିଲା ପରେ ପାଠକମାନଙ୍କର ପାଣି ସଂକ୍ରାନ୍ତ ଧାରଣା ପୂରାପୂରି ବଦଳି ଯିବ । ଏ ବହିରେ ଜଳ ଯୁଦ୍ଧ, ଜଳ ସାମ୍ରାଜ୍ୟ, ଜଳ ସଂପଦ, ଜଳ ଅର୍ଥନୀତି, ଜଳ ପୁଞ୍ଜିପତି, ଜଳ ପ୍ରଦୂଷଣ, ଜଳ ଅଧିକାର, ଜଳ ଘରୋଇକରଣ ଭଳି ତତଲା ପ୍ରସଙ୍ଗ ରହିଛି, ଯାହାକି ପାଠକଙ୍କ ଜ୍ଞାନଘରକୁ ଚହଲାଇ ଦେବ ।

'ଅଗ୍ରଗାମୀ' ଭଳି ସମଭାବାପନ୍ନ ସମାଜସେବୀ ସଂସ୍ଥା 'ପାଣି' ପ୍ରସଙ୍ଗ ଉପରେ ଜନ ଜାଗରଣ ପାଇଁ ଲାଗି ପଡିଥିବା ବେଳେ ସମସାମୟିକ ଭାବେ ରାଜ୍ୟର କେତେକ ସାହିତ୍ୟିକ ଓ ସାମ୍ବାଦିକ ମଧ୍ୟ ଏ ଦିଗରେ ଲେଖନୀ ଚଳାଇବା ଖୁବ୍ ଖୁସୀର କଥା । ଓଡ଼ିଶାରେ ଯୁବପିଢିର ଜଣେ ଆଗଧାଡ଼ିର ଚିନ୍ତାନାୟକ **ବିନୋଦ** ହେଉଛନ୍ତି ଏହି ବହିର ଲେଖକ । ସୁଖପାଠ୍ୟ ସାହିତ୍ୟ ଓ ସମ୍ବାଦ ଅପେକ୍ଷା ସୂଚନାଧର୍ମୀ ସାହିତ୍ୟ ଓ ସମ୍ବାଦ ସୃଷ୍ଟିରେ ନିଷ୍ଠା ରଖିଆସିଥିବା ବିନୋଦଙ୍କ ଏହି ପାଣ୍ଡୁଲିପିକୁ ସଂଯୋଗ କ୍ରମେ 'ଅଗ୍ରଗାମୀ' ଏକ ବହିରୂପ ଦେବା ପାଇଁ ଆଗ୍ରହ ପ୍ରକାଶ କରିଥିଲା । ବିନୋଦ ଏହାକୁ ଗ୍ରହଣ କରି ଥିବାରୁ 'ଅଗ୍ରଗାମୀ' ତାଙ୍କ ନିକଟରେ କୃତଜ୍ଞ । ବହିଟିକୁ ନିଖୁଣ ଓ ନିର୍ଭୁଲ୍ କରିବା ପାଇଁ ମୋର ସହକର୍ମୀମାନଙ୍କ ଉଦ୍ୟମ ପ୍ରଶଂସନୀୟ । ପାଠକମାନେ ବହିଟିକୁ ଆମୂଳଚୂଳ ପଢ଼ିବେ ଓ କ୍ରିୟାଶୀଳ ହେବେ, ଏହା ଆମର କାମ୍ୟ ।

**ଅଚ୍ୟୁତ ଦାସ**

# ସୂଚୀପତ୍ର

# ଜଳ ପାଇଁ ଯୁଦ୍ଧ

ବିଶ୍ୱର ପ୍ରତ୍ୟେକ ସଭ୍ୟତାର ଇତିହାସ ମୂଳତଃ ଜଳ ସହ ସମ୍ପର୍କିତ । ଆଜିଯାଏ ଯେତେ ସଭ୍ୟତା ଗଢ଼ି ଉଠିଛି ସେଥିରୁ ଅଧିକାଂଶ ସଭ୍ୟତା ସାଧାରଣ ଭାବେ ନଦୀକୂଳରେ ହିଁ ଗଢ଼ି ଉଠିଛି । ଜୀବଜଗତ ଓ ଉଦ୍ଭିଦ ଜଗତର ବିକାଶ ଓ ବିବର୍ତ୍ତନ ପ୍ରକ୍ରିୟାରେ ଜଳର ଭୂମିକା ଗୁରୁତ୍ୱପୂର୍ଣ୍ଣ । ଜୀବନ ଓ ଜଳ - ପରସ୍ପର ପରିପୂରକ । ଜଳ ନଥିଲେ ବିଶ୍ୱ ପ୍ରାଣୀ ସଭ୍ୟତା ବି ନଥାନ୍ତା । ପ୍ରକୃତି ଉପରେ ମନୁଷ୍ୟ ଓ ଜୀବଜଗତ ଅଧିକାର ସାବ୍ୟସ୍ତ କରିବା ଯଥାର୍ଥ । ପ୍ରକୃତି ଦତ୍ତ ସଂପଦର ମାଲିକାନା ଉପରେ କେହି ବଳପୂର୍ବକ ଅଧିକାର ସାବ୍ୟସ୍ତ କରିପାରେନା । ଏହି ଅଧିକାର ସ୍ୱାଧୀନ । ପ୍ରାକୃତିକ ସଂପଦକୁ ନେଇ ମଧ୍ୟ ଜୀବନ ସହ ଖେଳିବା ଏକ ଅପରାଧ ।

ଜଳ ଓ ଜୀବନ ମଧ୍ୟରେ ରହିଥିବା ଅତୁଟ ଓ ବାଧ୍ୟତାମୂଳକ ତଥା ନୈସର୍ଗିକ ସଂପର୍କର ଅର୍ଥନୈତିକ ରୂପ କ୍ରମଶଃ ନିର୍ଦ୍ଦିଷ୍ଟ କେତେକଙ୍କ ହାତରେ ମୁଷ୍ଟିବଦ୍ଧ ହୋଇଥିବା ବେଳେ ଜୀବନର ଅଧିକାରକୁ ନିୟନ୍ତ୍ରିତ କରାଯାଉଛି ମୁନାଫା ସୃଷ୍ଟିର ଏକ ଅପରାଧ ପ୍ରକ୍ରିୟା ଜରିଆରେ । କୋଟି କୋଟି ଜୀବନର ଆଧାର ଜଳକୁ ନିୟନ୍ତ୍ରିତ କରି ବିଶ୍ୱରେ ଜଳର ମାଲିକାନାକୁ ହାତେଇ ନେବା ପାଇଁ କରାଯାଉଥିବା ପ୍ରକ୍ରିୟା ବିଶ୍ୱରେ ମାନବବାଦ ପ୍ରତି ଚରମ ଆକ୍ରମଣ । ସାମାଜିକ, ରାଜନୈତିକ ଓ ଅର୍ଥନୈତିକ ଦୃଷ୍ଟିରୁ ବିଚାର କରାଗଲେ ଜଳର ନିୟନ୍ତ୍ରଣ ଭାର ଘରୋଇ ହାତକୁ ଯିବା ବିଶ୍ୱମାନବ ସଭ୍ୟତା ପ୍ରତି ଏକ ଚରମ ଆକ୍ରମଣ ।

ପୃଥିବୀରେ ଜଳ ପରିମାଣ ଖୁବ୍ ସୀମିତ । ଦିନକୁ ଦିନ ଜନସଂଖ୍ୟା ବୃଦ୍ଧି ପାଉଥିବା ବେଳେ ଜଳର ଗଭୀରତା ଓ ଜଳର ପର୍ଯ୍ୟାପ୍ତତା ମଧ୍ୟ ହ୍ରାସ ପାଇବାରେ ଲାଗିଛି । ପୃଥିବୀର ପ୍ରାୟ ଦୁଇ ତୃତୀୟାଂଶ ଲୋକ ସ୍ୱଚ୍ଛ ପାନୀୟ ଜଳରୁ ବଞ୍ଚିତ ହେଉଥିବା ବେଳେ ବିଶୁଦ୍ଧ ପାନୀୟ ଅଭାବରେ ପ୍ରତିଦିନ ବିଶ୍ୱରେ ୨୦୦୦ରୁ ଅଧିକ ଲୋକଙ୍କ ମୃତ୍ୟୁ ଘଟୁଛି । ଆଗାମୀ ଶତାବ୍ଦୀ ବେଳକୁ ଏହି ସମସ୍ୟା ଭୟାନକ ରୂପ ଧାରଣ କରିବ ଏବଂ ଜଳ ପାଇଁ ହିଁ ବିଶ୍ୱର ଅଧିକାଂଶ ଅଞ୍ଚଳରେ ପରସ୍ପର ମଧ୍ୟରେ ଯୁଦ୍ଧ

ହେବ । ବିଶ୍ୱରେ ଜଳକୁ ନେଇ ଅନେକ ବହୁରାଷ୍ଟ୍ରୀୟ କମ୍ପାନୀ ପୁଞ୍ଜିର ଖେଳ ଆରମ୍ଭ କରିଛନ୍ତି ଏବଂ ସାରା ବିଶ୍ୱରେ ଜଳର ମାଲିକାନା ନେବା ପାଇଁ ସମସ୍ତ ପ୍ରସ୍ତୁତି ଶେଷ କରିଛନ୍ତି । ବହୁରାଷ୍ଟ୍ରୀୟ ଜଳ କମ୍ପାନୀ ବିରୋଧରେ ଜାତୀୟ ଓ ଅର୍ନ୍ତଜାତୀୟ ସ୍ତରରେ ଦୁର୍ବାର ସଂଗ୍ରାମର ଅଭାବ, ଗଣତାନ୍ତ୍ରିକ ପଦ୍ଧତିରେ ନିର୍ବାଚିତ ସରକାର ଉପରେ ବହୁରାଷ୍ଟ୍ରୀୟ କମ୍ପାନୀଗୁଡିକର ଅମୋଘ ନିୟନ୍ତ୍ରଣ ଜଳର ବ୍ୟବସାୟକୁ ବଳଶାଳୀ କରିଛି । ଜଳର ବ୍ୟବହାର ମନୁଷ୍ୟର ସାମାଜିକ ଓ ରାଜନୈତିକ ଅଧିକାର । ଏହି ଅଧିକାରକୁ କେହି ଛଡ଼ାଇ ନେଇପାରିବେ ନାହିଁ । ସଭ୍ୟତାର ବିକାଶରେ ଜଳର ଭୂମିକା ଯେପରି ଅପରିହାର୍ଯ୍ୟ; ଜୀବନର ବିକାଶରେ ଜଳ ଉପରେ ଅଧିକାର ସାବ୍ୟସ୍ତ ମଧ ସେହିପରି ଅପରିହାର୍ଯ୍ୟ । ବହୁରାଷ୍ଟ୍ରୀୟ କମ୍ପାନୀର ମାୟାଜାଲରେ ଛଟପଟ ଅନେକ ରାଷ୍ଟ୍ରରେ ଏଥିପାଇଁ ଭିନ୍ନ ଏକ ମୁକ୍ତି ସଂଗ୍ରାମ ଗଢ଼ି ତୋଳିବାର ଆବଶ୍ୟକତା ଦେଖାଦେଇଛି ।

ଆନ୍ତର୍ଜାତିକ ମୁଦ୍ରାପାଣ୍ଠି (International Monetary Fund)ଓ ବିଶ୍ୱ ବ୍ୟାଙ୍କ (World Bank)ର ପ୍ରତ୍ୟକ୍ଷ ନିର୍ଦ୍ଦେଶକ୍ରମେ ଜଳର ବ୍ୟବସାୟକୁ ଅଧିକ ଗୁରୁତ୍ୱ ଦିଆଯାଉଛି ଏବଂ ବହୁରାଷ୍ଟ୍ରୀୟ କମ୍ପାନୀଗୁଡିକ ସହ ଜଳ ବଣ୍ଟନ ଚୁକ୍ତି କରିବା ପାଇଁ ବାଧ କରାଯାଉଛି । ଏଥିପାଇଁ ବିଶ୍ୱର ପ୍ରାୟ ୧୫୦ଟି ଦେଶରେ ବହୁରାଷ୍ଟ୍ରୀୟ କମ୍ପାନୀଗୁଡିକ ହାତରେ ଜଳ ବିତରଣ ଦାୟିତ୍ୱ ଦିଆଯାଇଛି । ଏପରିକି ପୁଞ୍ଜିବାଦୀ ରାଷ୍ଟ୍ରର ନିୟନ୍ତ୍ରଣରେ ଥିବା ଉତ୍ତର ଆମେରିକୀୟ ମୁକ୍ତ ବାଣିଜ୍ୟ ରାଜିନାମା (North American Free Trade Agreement- NAFTA) ଓ ଆମେରିକାର ମୁକ୍ତ ବାଣିଜ୍ୟ ଅଞ୍ଚଳ (Free Trade Area of the Americas- FTAA) ଜରିଆରେ ଏହି ପ୍ରକ୍ରିୟା ଜୋରଦାର କରାଯାଉଛି । କେବଳ ଏହି ଦୁଇଟି ନୁହେଁ ପୁଞ୍ଜିବାଦୀ ରାଷ୍ଟ୍ରଗୁଡିକ ସହ କରାଯାଇଥିବା ଚୁକ୍ତିରେ ମଧ ଜଳର ବ୍ୟବସାୟ ପାଇଁ ଅଧିକ ଗୁରୁତ୍ୱ ଦିଆଯାଉଛି ।

ପ୍ରାକୃତିକ ସମ୍ପଦର ଲୁଣ୍ଠନ ସଂପ୍ରତି ବିଭିନ୍ନ ଉପାୟରେ ଚାଲୁଛି । ଏଥିପାଇଁ ସାମ୍ରାଜ୍ୟବାଦୀ ଚାହିଦାର ଅଂଶ ସ୍ୱରୂପ ଜଳକୁ ପ୍ରାଥମିକ ଗୁରୁତ୍ୱ ଦିଆଯାଇଛି ଏବଂ ଜୀବନର ଚାଳିକା ଶକ୍ତି ଜଳ ହୋଇଥିବାରୁ ଏବଂ ଏହାଠାରୁ ବଳି ନିଷ୍ଠୁର ନିୟନ୍ତ୍ରଣ ଆଉ କିଛି ନଥିବାରୁ ଶେଷରେ ମୁନାଫା ସୃଷ୍ଟିକାରୀମାନେ ଜଳକୁ ମାଧମଭାବେ ଗ୍ରହଣ କରିଛନ୍ତି ।

ପୃଥିବୀରେ ୩ ଭାଗ ଜଳ ରହିଥିଲେ ମଧ ବାସ୍ତବରେ ପାନୀୟ ଓ ସ୍ୱଚ୍ଛଜଳ ପରିମାଣ ମାତ୍ର ଏକ ଭାଗ । ଅବଶିଷ୍ଟ ଜଳ ଲୁଣିଆ ସମୁଦ୍ର ଜଳ ଓ ମେରୁରେ ଗଚ୍ଛିତ

ରହିଯାଇଥିବା ବିଶାଳ ବରଫ ପାହାଡ । ଏହି ମୁଷ୍ଟିମେୟ ଜଳ ପରିମାଣ ମଧ୍ୟ କ୍ରମଶଃ ବ୍ୟାପକ ଭାବେ ହ୍ରାସ ପାଇବାରେ ଲାଗିବା ସହ ପାଣିର ଗଭୀରତା ଦିନକୁ ଦିନ ନିମ୍ନଗାମୀ ହେବାରେ ଲାଗିଛି । ଆବର୍ଜନାମୟ ପୃଥିବୀରେ ସହରୀ ସଭ୍ୟତାର ବିକାଶ ଓ ଅତ୍ୟାଧୁନିକ ଯନ୍ତ୍ରପାତି ନିର୍ମାଣ ଏବଂ ପ୍ଲାଷ୍ଟିକ୍ ଜଗତର ବିକାଶ ଯୋଗୁ ପ୍ରତିଦିନ ଏକଶହ କୋଟି ଲିଟର ଜଳ ବିଷାକ୍ତ ହୋଇଯାଉଛି ଏବଂ ପିଇବା ପାଇଁ ସଂପୂର୍ଣ୍ଣ ଅନୁପଯୁକ୍ତ ହୋଇଯାଉଛି । ପୃଥିବୀରେ ଥିବା ସମୁଦାୟ ଜଳର ପରିମାଣ ୧୪୦କୋଟି ଘନ କିଲୋମିଟର । ମାତ୍ର ଏଥିରୁ ପାନୀୟ ଜଳର ପରିମାଣ ମାତ୍ର ୩୪ହଜାର ଘନ କିଲୋମିଟର । ପ୍ରତିବର୍ଷ ବର୍ଷା ଅନୁପାତ ହ୍ରାସ ପାଇବା ସହ ବିଷାକ୍ତ ପଦାର୍ଥ ପାଣିରେ ମିଶିବା ଯୋଗୁଁ ପ୍ରତିଦିନ ଏହି ପରିମାଣ ହ୍ରାସ ପାଇବାରେ ଲାଗିଛି ।

ପୃଥିବୀରେ ଜନସଂଖ୍ୟା ବୃଦ୍ଧିର ଗତି ଅପରିସୀମ ଭାବେ ବୃଦ୍ଧି ପାଉଛି । ଏହାର ନିୟନ୍ତ୍ରଣ ମଧ୍ୟ କରିବା ସମ୍ଭବ ହୋଇପାରିନାହିଁ । ଜନ ସଂଖ୍ୟା ବୃଦ୍ଧିର ଏକ ତୁଳନାତ୍ମକ ଚିତ୍ର ଏଠାରେ ପ୍ରକାଶ କରାଯାଉଛି ।

| | ଅବଧି | ବୃଦ୍ଧି (ନିୟୁତରେ) | | ଦୁଇଗଣ ଜନସଂଖ୍ୟା ପାଇଁ ଆବଶ୍ୟକ ବର୍ଷ |
|---|---|---|---|---|
| ଖ୍ରୀ.ପୂ. | ୭୦୦୦-୪୫୦୦ | ୧୦ | ୨୦ | ୨୫୦୦ |
| | ୪୫୦୦-୨୫୦୦ | ୨୦ | ୪୦ | ୨୦୦୦ |
| | ୨୫୦୦-୧୦୦୦ | ୪୦ | ୮୦ | ୧୫୦୦ |
| | ୧୦୦୦-୦ | ୮୦ | ୧୬୦ | ୧୦୦୦ |
| ଖ୍ରୀ. | ୦-୯୦୦ | ୧୬୦ | ୩୨୦ | ୯୦୦ |
| | ୯୦୦-୧୭୦୦ | ୩୨୦ | ୬୦୦ | ୮୦୦ |
| | ୧୭୦୦-୧୮୫୦ | ୬୦୦ | ୧୨୦୦ | ୧୫୦ |
| | ୧୮୫୦-୧୯୫୦ | ୧୨୦୦ | ୨୫୦୦ | ୧୦୦ |
| | ୧୯୫୦-୨୦୦୦ | ୨୫୦୦ | ୬୦୦୦ | ୫୦ |
| | ୨୦୦୦-୨୦୫୦ | ୬୦୦୦ | ୧୨୦୦୦ | ୫୦ |

(ଆନୁମାନିକ ହିସାବ)

ତେଣୁ ଆଗାମୀ ୨୦୫୦ ବେଳକୁ ପୃଥିବୀର ଜନସଂଖ୍ୟା ୧୨୦୦୦କୋଟିରେ ପହଞ୍ଚିବାକୁ ଯାଉଥିବା ବେଳେ ଜଳର ଅନୁପାତ ମଧ୍ୟ ଯଥେଷ୍ଟ କମିଥିବ । ସେତେବେଳକୁ

ଜଳ ପାଇଁ ଏପରିକି ଗାଁ ଗାଁରେ ସଂଘର୍ଷ ସୃଷ୍ଟି ହେବା ସ୍ୱାଭାବିକ । ମାତ୍ର ଗାଁ ନିକଟରେ ସେତେବେଳକୁ ଜଳର ଅଧିକାର ନଥିବ । ବରଂ ସମଗ୍ର ବିଶ୍ୱର ପ୍ରତ୍ୟେକ ଗ୍ରାମ ବହୁରାଷ୍ଟ୍ରୀୟ କମ୍ପାନୀ ଦ୍ୱାରା ନିୟନ୍ତ୍ରିତ ହେଉଥିବ । ପୁଞ୍ଜିପତିମାନେ ଅପର୍ଯ୍ୟାପ୍ତ ଅର୍ଥ ଲାଭ କରୁଥିବା ବେଳେ ଟୋପାଏ ଜଳ ପାଇଁ କୋଟି କୋଟି ଜନସାଧାରଣ ମୃତ୍ୟୁବରଣ କରିବା ସ୍ୱାଭାବିକ ହେବ ।

ବିଶ୍ୱରେ ସମୁଦ୍ର ଜଳପରିମାଣ ସ୍ଥଳଭାଗ ତୁଳନାରେ ଯଥେଷ୍ଟ ହେଲେ ମଧ୍ୟ ବ୍ୟବହାର ଉପଯୋଗୀ ଜଳର ପରିମାଣ ଯଥେଷ୍ଟ କମ୍ ।

ବିଶ୍ୱର ଜଳ ଓ ସ୍ଥଳ ପରିମାଣର ଏକ ତୁଳାନତ୍ମକ ଚିତ୍ର ଏଠାରେ ଦିଆଯାଇପାରେ-

| | |
|---|---|
| ସମୁଦ୍ର ଜଳ ଭାଗ | - ୩୬୦ନିୟୁତ ବର୍ଗ କି.ମି. |
| ଗ୍ରୀଷ୍ମ ମଣ୍ଡଳୀୟ ଜଙ୍ଗଲ | - ୧ନିୟୁତ ବର୍ଗ କି.ମି. |
| ସମଶୀତୋଷ୍ଣ ଜଙ୍ଗଲ | - ୨୫ନିୟୁତ ବର୍ଗ କି.ମି. |
| ସବୁଜ ତୃଣଭୂମି ଓ ସବୁଜିମା | - ୪୨ ନିୟୁତ ବର୍ଗ କି.ମି. |
| କୃଷି ଉପଯୋଗୀ ଜମି | - ୧୪ ନିୟୁତ ବର୍ଗ କି.ମି. |

ଏତେ ବିପୁଳ ପରିମାଣର ଜଳ ଥିଲେ ମଧ୍ୟ ସେଥିରୁ କୃଷି ଉପଯୋଗୀ ଓ ପାନୀୟ ଜଳ ପାଇଁ ବ୍ୟବହାର ହୋଇପାରୁଥିବା ଜଳ ପରିମାଣ ଯଥେଷ୍ଟ କମ୍ । ସମୁଦ୍ରରୁ ପ୍ରତିବର୍ଷ ୪,୫୦,୦୦୦ ଘନ କିଲୋମିଟର ଜଳ ବାଷ୍ପ ହୋଇଯାଇଥାଏ ଏବଂ ସେଥିରୁ ୩,୦୦,୦୦୦ ଘନ କି.ମି. ଜଳ ଫେରିଆସିଥାଏ । ଅବଶିଷ୍ଟ ୧,୦୦,୦୦୦ ଘନ କି.ମି. ଜଳ ବିଭିନ୍ନ ନଦ ନଦୀ, ପାହାଡ, ଜମିରେ ବହିଯାଇଥାଏ । ଜଳବାୟୁରେ ସାଧାରଣତଃ ୧୪୦୦୦ ଘନ କି.ମି. ଜଳ ରହିଥିବାବେଳେ ସମସ୍ତ ନଦୀରେ ୧୨,୦୦ ଘନ କି.ମି., ହ୍ରଦରେ ୨,୮୦,୦୦୦ ଘନ କି.ମି., ଜୀବଜନ୍ତୁଙ୍କ ଦେହର ୧୦,୦୦୦ ଘନ କି.ମି, ସମୁଦ୍ରରେ ୩ଲକ୍ଷ ଘନ କି.ମି, ଏବଂ ବରଫୀକୃତ ଅଞ୍ଚଳରେ ୨୪,୦୦୦ ଘନ କିମି ଜଳ ଗଚ୍ଛିତ ରହିଥାଏ । ତେବେ ବାୟୁମଣ୍ଡଳ ଓ ନଦୀରେ ଥିବା ଜଳ ଖୁବଶୀଘ୍ର ଦୂଷିତ ହୋଇ ନଷ୍ଟ ହୋଇଯାଇ ଥାଏ । କେବଳ ତେଜଷ୍କ୍ରିୟ ପଦାର୍ଥର ସଂସ୍ପର୍ଶରେ ଆସି ଦୈନିକ ୫୦ଘନ କିମି ଜଳ ସଂପୂର୍ଣ୍ଣ ବିଷାକ୍ତ ହୋଇଯାଇଥାଏ । ଏହା ବାଦ୍, ବିକଶିତ ତଥା ଶିଳ୍ପୋନ୍ନତ ରାଜ୍ୟଗୁଡିକର ବର୍ଜ୍ୟବସ୍ତୁଗୁଡିକ ଯୋଗୁଁ ପ୍ରତିଦିନ ୫୦୦ ଘନ କିମି ଜଳ ବିଷାକ୍ତ ହୋଇଥାଏ । ଏଥିରୁ ସହଜରେ ଅନୁମେୟ ପୃଥିବୀର ଜଳ ପରିମାଣ କେଉଁ ପରମାଣରେ ହ୍ରାସ ପାଉଛି । ଅପରପକ୍ଷେ ଶିଳ୍ପ ପ୍ରତିଷ୍ଠା ପାଇଁ

ଆଗେଇ ଆସୁଥିବା ବୃହତ୍ କମ୍ପାନୀମାନେ ଅଧିଗ୍ରହଣ କରୁଥିବା ହଜାର ହଜାର ଏକର ଜମି ଓ ଏଥିରେ ଥିବା ଜଳ ଖୁବ୍ ନିକଟ ଭବିଷ୍ୟତରେ ବିଷାକ୍ତ ହୋଇ ଯାଉଥିବା ଯୋଗୁ ଶିଳ୍ପପତିମାନେ ପ୍ଲାଣ୍ଟ ସାଇଟ୍ ପାଇଁ ୨୦୦-୩୦୦ କି.ମି. ଦୂରରୁ ପାଣି ଆଣିବାକୁ ବାଧ୍ୟ ହୋଇଥାନ୍ତି । ଯାହାର ପ୍ରଭାବ ସ୍ଥାନୀୟ ଅଧିବାସୀଙ୍କ ଉପରେ ପଡେ । ଏହାଛଡା ସ୍ଥାନୀୟ ଅଞ୍ଚଳରେ ସମସ୍ତ ନଦୀ ମଧ୍ୟ ବିଷାକ୍ତ ହୋଇଯାଉଥିବା ଯୋଗୁଁ ନଦୀର ଉତ୍ପତ୍ତିସ୍ଥଳ ଉପରେ ମଧ୍ୟ କମ୍ପାନୀଗୁଡ଼ିକ ଗୁରୁତ୍ୱ ଦେଇଥାନ୍ତି ।

ଭୟଙ୍କର ଜଳ ବିବାଦ ଘେରରେ ରହିଥିବା ବିଶ୍ୱର ୫ଟି ବହୁଚର୍ଚ୍ଚିତ ଅଞ୍ଚଳ ହେଉଛି ନୀଳ, ଟାଇଗ୍ରିସ-ୟୁଫ୍ରେଟିସ, ଜୋର୍ଡାନ, ଗାଂଗେୟ ଓ ଆରାଲ ସମୁଦ୍ରାଞ୍ଚଳ । ଏହି ସମସ୍ତ ଅଞ୍ଚଳରେ ଜନସଂଖ୍ୟା ଦ୍ରୁତ ବେଗରେ ବୃଦ୍ଧି ପାଉଥିବାବେଳେ ଜଳକୁ ନେଇ ସଂଘର୍ଷ ଉପୁଜୁଛି । ସେହିପରି ଏକ କୋଟିରୁ ଊର୍ଦ୍ଧ୍ୱ ଜନସଂଖ୍ୟା ଥିବା ପୃଥିବୀର ୨୨ଟି ସହରରେ ମଧ୍ୟ ଜଳ ପାଇଁ ଭୟଙ୍କର ସଂକଟ ଉପୁଜିଛି । ଏହି ସହରଗୁଡିକରେ ଜନସଂଖ୍ୟା ୧୬୦ ପ୍ରତିଶତ ବୃଦ୍ଧି ପାଉଥିବାରୁ ଜଳ ସମସ୍ୟା ଆଗାମୀ ଦିନରେ ଅଧିକ ଭୟଙ୍କର ହେବାକୁ ଯାଉଛି । ଅପରପକ୍ଷେ ପୃଥିବୀରେ ଜଳର ବ୍ୟବହାର ପ୍ରତି ୨୦ ବର୍ଷରେ ଦୁଇଗୁଣ ହେଉଥିବା ବେଳେ ବୃହତ୍ ଶିଳ୍ପ ପ୍ରତିଷ୍ଠା ସଂଖ୍ୟା ପ୍ରତି ୩୦ବର୍ଷରେ ଦୁଇଗୁଣ ହୋଇଯାଉଛି । ଗୋଟିଏ କାର୍ ନିର୍ମାଣ କରିବା କ୍ଷେତ୍ରରେ ପ୍ରାୟ ୪ଲକ୍ଷ ଲିଟର ଜଳର ଆବଶ୍ୟକ ହେଉଥିବାରୁ ତୁଳନାତ୍ମକ ଭାବେ ବିଚାର କଲେ ବୃହତ୍ ଶିଳ୍ପରେ ବ୍ୟବହାର କରାଯାଉଥିବା ପାଣି ମୁଖ୍ୟତଃ ବ୍ୟବହାର କରାଯାଉଥିବା ଜଳର ୬୦ଭାଗ ନିଃଶେଷ କରିଦେଇଥାଏ । କେବଳ ଆମେରିକାରେ ଶିଳ୍ପ ସଂସ୍ଥାଗୁଡିକ ବାର୍ଷିକ ୧,୫୦,୦୦୦ କୋଟି ଲିଟର ଜଳ ବ୍ୟବହାର କରୁଥିବାବେଳେ ବାର୍ଷିକ ୩୦,୦୦୦ କୋଟି ଲିଟର ବିଷାକ୍ତ ଜଳ ସୃଷ୍ଟି କରୁଛନ୍ତି । ହାଇଟେକ୍ ସେଣ୍ଟରଗୁଡିକ ସର୍ବାଧିକ ବିଷାକ୍ତ ଜଳ ତିଆରି କରିବାରେ ପ୍ରମୁଖ ଭୂମିକା ଗ୍ରହଣ କରୁଛନ୍ତି ।

ଆମେରିକାରେ ଦୈନିକ ୧୫୦୦ଟନ୍ ଓଜନର କଂପ୍ୟୁଟର ସାମଗ୍ରୀ ନଷ୍ଟ ହେଉଛି । ମାତ୍ର ସେଗୁଡିକ ସେଠାରେ ରିସାଇକ୍ଲିଂ ନକରି ତୃତୀୟ ବିଶ୍ୱ ଯଥା- ଭାରତ ପରି ଅନେକ ଦେଶକୁ ବିକ୍ରି କରିଦିଆଯାଉଛି । ଭାରତରେ ସେହି କଂପ୍ୟୁଟର ସାମଗ୍ରୀକୁ ପୁଣି ନୂଆ ସାମଗ୍ରୀ ରୂପେ ତିଆରି କରାଯାଉଛି । ମାତ୍ର ଏହା ଯୋଗୁ ଶହଶହ କୋଟି ଲିଟର ଜଳ ବ୍ୟବହାର ହୋଇଥାଏ ଏବଂ ସେଥିରୁ ୭୫ଭାଗ ଜଳ ବିଷାକ୍ତ ହୋଇଯାଇଥାଏ । ଏଥିପାଇଁ ତୃତୀୟ ବିଶ୍ୱରେ ପ୍ରବଳ ଅସନ୍ତୋଷ ପ୍ରକାଶିତ ହୋଇଆସୁଛି ।

ସଭ୍ୟତାର ମାତ୍ରାଧିକ ବିକାଶ ଯୋଗୁ ଏବଂ ବିଶ୍ୱର ସର୍ବତ୍ର କଂକ୍ରିଟ୍ ଜଙ୍ଗଲ ସୃଷ୍ଟି ହେଉଥିବାରୁ ମାଟିର ଜଳ ଧାରଣ କ୍ଷମତା ହ୍ରାସ ପାଉଛି । ଫଳରେ ପର୍ଯ୍ୟାପ୍ତ

ପରିମାଣର ଜଳ ବର୍ଷା ଦିନେ ସିଧାସଳଖ ନଦୀରେ ମିଶି ସମୁଦ୍ରକୁ ଚାଲିଯାଇଥାଏ । ପ୍ରତିବର୍ଷ ପୃଥିବୀର ୧୮୦୦ ବିଲିୟନ ଘନମିଟର ଜଳ ମାଟିରେ ନରହି ସମୁଦ୍ରକୁ ଚାଲିଯାଇଥାଏ । ଯେଉଁଥିପାଇଁ ସମୁଦ୍ର ଜଳ ପତନ ବାର୍ଷିକ ୫ମିଲିମିଟର ବୃଦ୍ଧି ପାଉଛି । ସମୁଦ୍ର ପତନ ବୃଦ୍ଧି ପାଉଥିବାରୁ ଏହାର ପ୍ରତିକୂଳ ପ୍ରଭାବ ସ୍ଥଳ ଭୂମିରେ ପଡିବା ସ୍ୱାଭାବିକ ।

ପୃଥିବୀର ସର୍ବାଧିକ ଜନ ବହୁଳ ଅଞ୍ଚଳ ଚାଇନା ଓ ଭାରତରେ ଭୂଜଳ ଉପରେ ୫୦-୧୦୦ ପ୍ରତିଶତ ଭରସା ରଖାଯାଇଥାଏ । ସେହିପରି ପୃଥିବୀର ପ୍ରାୟ ୪୦୦ କୋଟି ଲୋକ ଭୂଜଳ ଉପରେ ହିଁ ନିର୍ଭର କରିଥାନ୍ତି । ଫ୍ରାନସ୍, କାନାଡ଼ା ଓ ବ୍ରିଟେନ୍‌ରେ ଏକ ତୃତୀୟାଂଶ ଜଳ ବାହାରୁ ସଂଗ୍ରହ କରାଯାଇଥାଏ । ବିଶ୍ୱର ବହୁରାଷ୍ଟ୍ରରେ ସବୁଜ ବିପ୍ଲବର ଆହ୍ୱାନ ଦିଆଯାଉଥିବା ସତ୍ତ୍ୱେ ଜଳର ବ୍ୟାପକ ଅଭାବ ଯୋଗୁ ତାହା ସଫଳ ହୋଇପାରିନଥାଏ । ତେଣୁ ସବୁଜ ବିପ୍ଳବ ବଦଳରେ ଗହମ ପରି ଦ୍ରବ୍ୟର ବ୍ୟାପକ ଚାଷ ପାଇଁ ଆମେରିକା ସମେତ ଅନେକ ଧନଶାଳୀ ରାଷ୍ଟ୍ର ଜେନେଟିକ ଇଜିନିୟରିଂ ଜରିଆରେ ନୂଆ ଶସ୍ୟ ବାହାର କରୁଛନ୍ତି; ଯାହାର ଅନେକ ଭୟଙ୍କର ପ୍ରଭାବ ଜୀବଜଗତ ଉପରେ ପଡୁଛି ।

ଶିଳ୍ପର ଅଗ୍ରଗତି ସହ ପର୍ଯ୍ୟାପ୍ତ ପରିମାଣର କୋଇଲାଖଣି ଖନନ କରାଯାଉଥିବା ବେଳେ ପ୍ରତି ଖଣିରେ ହାରାହାରି ୬୦ହଜାର ଲିଟର ମଧୁର ଜଳ ବିଷାକ୍ତ ହୋଇଥାଏ ଯାହା ପରବର୍ତ୍ତୀ ପର୍ଯ୍ୟାୟରେ ନଦୀରେ ମିଶି ସମୁଦ୍ର ଜଳକୁ ବିଷାକ୍ତ କରିଥାଏ । ଏହା ଯୋଗୁ ସାମୁଦ୍ରିକ ଜୀବଜଗତ ମୃତ୍ୟୁ ମୁଖରେ ପଡିଥାନ୍ତି ।

ପ୍ରାକୃତିକ ସମ୍ପଦକୁ ଶୋଷଣ କରିବା ସାମ୍ରାଜ୍ୟବାଦୀ ଶକ୍ତିଗୁଡ଼ିକର ଏକ ପ୍ରକ୍ରିୟା ହୋଇଥିବାରୁ ଭୂତଳ ଜଳକୁ ବିଭିନ୍ନ ଉପାୟରେ ବାହାର କରି ଶିଳ୍ପ ଓ କୃଷି ପାଇଁ ବିନିଯୋଗ କରିବା ଦ୍ୱାରା ଆମେରିକାରେ ପ୍ରତିବର୍ଷ ଜଳସ୍ତର ହାରାହାରି ଏକ ମିଟର ଗଭୀରକୁ ଚାଲିଯାଉଛି । ଭାରତରେ ମଧ୍ୟ ପ୍ରତିବର୍ଷ ପ୍ରାୟ ଏକ ମିଟର ଗଭୀରକୁ ଜଳ ଚାଲିଯାଉଛି । ଏହି କାରଣରୁ ଆମେରିକାର କଲରାଡୋ ନଦୀର ଜଳପତନ ମଧ୍ୟ ଆଖିଦୃଶିଆ ଭାବେ ହ୍ରାସ ପାଉଛି ।

ଜଳ ଧାରଣ କ୍ଷମତା ହରାଇବା ଏବଂ ଜଳର ଆବଶ୍ୟକତାକୁ ନେଇ କୌଣସି ମାଷ୍ଟର ପ୍ଲାନ ନଥିବାରୁ ଆଜି ଅର୍ଥନୈତିକ ଭାବେ ଦେବାଳିଆ ହୋଇପଡିଥିବା ମେକ୍ସିକୋ ସିଟି ଆଉ ୧୦ବର୍ଷ ମଧ୍ୟରେ ସଂପୂର୍ଣ୍ଣ ଜଳଶୂନ୍ୟ ହେବାକୁ ଯାଉଛି । ୫୦୦ ବର୍ଷପୂର୍ବେ ମେକ୍ସିକୋ ସହର ଥିଲା ସବୁଜିମାରେ ପରିପୂର୍ଣ୍ଣ । ବିପୁଳ

ପରିମାଣର ନଦୀବନ୍ଧ ଓ କେନାଲରେ ପରିପୂର୍ଣ୍ଣ ଏହି ସହର ଉପରେ ୧୫୨୧ରେ ସ୍ପେନ୍ ସୈନ୍ୟମାନେ ଆକ୍ରମଣ କରିଥିଲେ । ସେମାନେ ଆଜଟେକ ସଭ୍ୟତାର ସମସ୍ତ କୀର୍ତ୍ତି ଭାଙ୍ଗି ଦେଇ ଜଳସେଚନ ବ୍ୟବସ୍ଥାକୁ ମଧ୍ୟ ପଙ୍ଗୁ କରି ଦେଇଥିଲେ ।

ମେକ୍ସିକୋ ସହରକୁ ସ୍ପେନୀୟମାନେ ନୂଆ ସ୍ପେନ୍‌ର ରାଜଧାନୀ ଭାବେ ଘୋଷଣା କରିଥିଲେ ମଧ୍ୟ ଏହାର ମୁଖ୍ୟ ଜଳ କ୍ଷମତା ପ୍ରତି କୌଣସି ଧ୍ୟାନ ଦେଇନଥିଲେ । ୧୮୪୫ ସୁଦ୍ଧା ମେକସିକୋ ସିଟିର ଜନ ସଂଖ୍ୟା ଥିଲା ପ୍ରାୟ ଅଢେଇଲକ୍ଷ । ମାତ୍ର ଜନସଂଖ୍ୟା ପ୍ରଚଣ୍ଡ ବେଗରେ ବୃଦ୍ଧି ପାଇବା ହେତୁ ସଂପ୍ରତି ସେହି ସହରରେ ଜନସଂଖ୍ୟା ୨୫ନିୟୁତରେ ପହଞ୍ଚିଛି । ତେବେ ଜଳର ପ୍ରଚଣ୍ଡ ସମସ୍ୟା ସେଠାରେ ଏବେ ଦେଖାଦେଇଛି ଏବଂ ଏପରିକି ସେଠାରେ ପ୍ରାୟ ତିନି କିଲୋମିଟର ଗଭୀରକୁ ପାଣି ଚାଲିଯାଇଛି । ଆଗାମୀ ୧୦ବର୍ଷ ମଧ୍ୟରେ ସହରରେ ଜଳ ମିଳିବା ସଂପୂର୍ଣ୍ଣ ଅସମ୍ଭବ ହୋଇ ପଡିବାର ଆଶଙ୍କା ଦେଖାଦେଲାଣି । ସେହିପରି ମେକସିକୋ- ଆମେରିକା ସୀମାନ୍ତରେ ଥିବା ଅନେକ ସହରରେ ସପ୍ତାହକୁ ଥରେ ଜଳ ବ୍ୟବହାର କରିବା ପାଇଁ ପରାମର୍ଶ ଦିଆଯାଉଛି ।

ଭାରତର ପଡୋଶୀ ଚାଇନା ପୃଥିବୀରେ ସର୍ବାଧିକ ଜନବହୁଳ ରାଷ୍ଟ୍ର ହୋଇଥିବା ବେଳେ ସେ ଦେଶରେ ଜଳ ପରିମାଣ ମାତ୍ର ୬% ରହିଛି । ଏକଦା ଚାଇନାର ନଦୀଗୁଡିକ ସେ ଦେଶକୁ ସବୁଜ ବିପ୍ଳବ ସୃଷ୍ଟି କରିବାରେ ସକ୍ଷମ ହୋଇଥିବା ବେଳେ ସଂପ୍ରତି ଅଧିକାଂଶ ନଦୀ ଶୁଖିଲା ଥିବା ଦେଖାଯାଉଛି । ଏପରିକି ୧୯୭୨ ମସିହାରେ ୟେଲୋ ନଦୀ ସମୁଦ୍ରରେ ପହଞ୍ଚିବାକୁ ସକ୍ଷମ ହୋଇପାରି ନଥିଲା । ଏହି ଉଦାହରଣ ସମଗ୍ର ବିଶ୍ୱପାଇଁ ଏକ ଶିକ୍ଷଣୀୟ ବିଷୟ ।

ସଂପ୍ରତି ପୃଥିବୀର ପ୍ରାୟ ୫୦ଟି ରାଷ୍ଟ୍ରରେ ଭୟଙ୍କର ଜଳ ସଂକଟ ଦେଖା ଦେଇଛି । ପ୍ରାୟ ୨୦୦କୋଟି ଲୋକ ସ୍ୱଚ୍ଛପାନୀୟ ଜଳ ପିଇବାରୁ ବଞ୍ଚିତ । ୨୦୨୫ବେଳକୁ ଏହି ଲୋକଙ୍କ ସଂଖ୍ୟା ୩୦୦ କୋଟି ହେବ । କିନ୍ତୁ ଶିଳ୍ପୋନ୍ନତ ରାଷ୍ଟ୍ରରେ ଜଳ ଏକ ପ୍ରଶ୍ନବାଚୀ ହେବା ନିଶ୍ଚିତ ହୋଇଯାଇଛି । ଏହାକୁ ଆଖିଆଗରେ ରଖି ଧନଶାଳୀ ଓ ଯୁଦ୍ଧବାଦୀ ରାଷ୍ଟ୍ର ପେଟ୍ରୋଲ, ଡିଜେଲ ସହ ଜଳକୁ ମଧ୍ୟ ତୁଳନା କରି ମୁଖ୍ୟତଃ ତୃତୀୟ ବିଶ୍ୱ ଉପରେ ଆଖି ରଖିଛନ୍ତି । ଏଥିପାଇଁ ଭବିଷ୍ୟତରେ ଜଳ ପାଇଁ ହିଁ ଯୁଦ୍ଧ ସଂଗଠିତ ହେବାର ସ୍ପଷ୍ଟ ପ୍ରମାଣ ମିଳୁଛି ।



# ଜଳ ଓ ଜୀବନ ଉପରେ ସାମ୍ରାଜ୍ୟବାଦୀ ମାଲିକାନା

ଆମେରିକା, ଜର୍ମାନୀ, କାନାଡା, ଫ୍ରାନ୍ସ ପ୍ରଭୃତି ଧନଶାଳୀ ରାଷ୍ଟ୍ରରେ ପ୍ରାକୃତିକ ସଂପଦର ବ୍ୟବହାର ଯେକୌଣସି ରାଷ୍ଟ୍ର ତୁଳନାରେ ଯଥେଷ୍ଟ ଅଧିକ । ସେମାନେ ମୁଣ୍ଡପିଛା ସାଧାରଣତଃ ୮୧ ଗୁଣ ବିଦ୍ୟୁତ, ୩୨୦ ଗୁଣ କାର, ୮୦ଗୁଣ ଲୁହା, ୧୧୫ ଗୁଣ କାଗଜ, ୯୦ଗୁଣ ଜଳ ବ୍ୟବହାର କରୁଥିବାବେଳେ ୮୨ଗୁଣ ବିଷାକ୍ତ ପଦାର୍ଥ, ୭୦% କାର୍ବନ ଡାଇଅକ୍ସାଇଡ୍ ପରିବେଶକୁ ଛାଡିଥାନ୍ତି । ଏହାଛଡା ସେମାନେ ଆଭିଜାତ୍ୟ ଜୀବନ ବିତାଇବା ସହ ତଥାକଥିତ କାର ରାଲି କରି ସମଗ୍ର ପେଟ୍ରୋଲ, ଡ଼ିଜେଲର ୬୦% ଖର୍ଚ୍ଚ କରିଥାନ୍ତି । ସେହି ଦେଶଗୁଡିକରେ ପେଟ୍ରୋଲିୟମ ସଂପଦ ଯଥେଷ୍ଟ କମ୍ ଗଚ୍ଛିତ ଥିବାରୁ ସେମାନେ ବାଧହୋଇ ମଧ୍ୟପ୍ରାଚ୍ୟ ଉପରେ ଦୃଷ୍ଟି ନିବଦ୍ଧ କରିଛନ୍ତି । ତେଣୁ ସାମ୍ରାଜ୍ୟବାଦୀ ଆବଶ୍ୟକତାକୁ ପୂରଣ କରିବା ପାଇଁ ଯେଉଁ ଯୁଦ୍ଧ ଆବଶ୍ୟକତା ହୁଏ ତାହାକୁ ସେମାନେ ବିଶ୍ୱ ଆବଶ୍ୟକତା ବୋଲି ପ୍ରଚାର କରିଥାନ୍ତି ଏବଂ ଆତଙ୍କବାଦ ବିରୋଧରେ ଲଢେଇ ବୋଲି ମିଥ୍ୟା ପ୍ରଚାର କରି ଆକ୍ରମଣ କରିଥାନ୍ତି ।

ବହୁ ବୃହତ୍ ପୁଞ୍ଜିପତି ଓ ବିଶ୍ୱସ୍ତରୀୟ କମ୍ପାନୀ ନିଜର ବ୍ୟବସାୟ ବୃଦ୍ଧି କରିବା ପାଇଁ ସାରା ବିଶ୍ୱରେ ପ୍ଲାଣ୍ଟ ପ୍ରତିଷ୍ଠା କରିଛନ୍ତି । ଜେନରାଲ ଇଲେକ୍ଟ୍ରିକ, ଜେନରାଲ ମୋଟର୍ସ, ଗୁଡରିକ୍, ୱେଷ୍ଟିଂ ହାଉସ, ଏନ୍‌ରନ୍, କୋଡାକ, ୟୁରେକା ଫୋର୍ବସ, ଭୋଲକସ୍ୱାଗନ, ହୋଣ୍ଡା, ସୁଜୁକି, ଫାଇଜର, ଟୟଟା, ଆଇଚର, କୋକାକଲା ଇତ୍ୟାଦି କମ୍ପାନୀ ବୃହତ ପ୍ଲାଣ୍ଟ ପ୍ରତିଷ୍ଠା କରି ସାରା ବିଶ୍ୱରେ ଶିଳ୍ପ ପାଇଁ ଆବଶ୍ୟକ ହେଉଥିବା ଜଳର ୩୦ଭାଗ ନଷ୍ଟ କରିଥାନ୍ତି । ସେମାନଙ୍କ ଉପରେ ମଧ୍ୟ କୌଣସି ନିୟନ୍ତ୍ରଣ ନାହିଁ ।

ଆମେରିକାରେ ଦିନକୁ ଦିନ ବିଭିନ୍ନ ଦ୍ରବ୍ୟର ଆବଶ୍ୟକତା ବୃଦ୍ଧି ପାଉଥିବା ବେଳେ ସେଗୁଡିକୁ ତିଆରି କରିବା ପାଇଁ ମଧ୍ୟ ପର୍ଯ୍ୟାପ୍ତ ଜଳ ନଷ୍ଟ କରାଯାଇଥାଏ ।

ସୋଡା ବୋତଲ ପରିମାଣ ୫୩୦୦୦%, ସିନ୍ଥେଟିକ ଫାଇବର ୫୯୮୦%, ମର୍କୁରୀ ୫୯୩୦%, ଏୟାର କଣ୍ଡିସନର ୨୮୫୦%, ପ୍ଲାଷ୍ଟିକ ୧୯୫୦%, ଆଲୁମିନିୟମ ୬୮୦%, ସିମେଣ୍ଟ ୧୫୦%, କଂପ୍ୟୁଟର ୮୦୦%, କ୍ଲୋରିନ ଗ୍ୟାସ ୬୦୦% ଇତ୍ୟାଦି ଆବଶ୍ୟକତା ମେଣ୍ଟାଇବା ପାଇଁ ବିପୁଳ ପରିମାଣର ଜଳ ବ୍ୟବହୃତ ହୋଇଥାଏ । ଆଶ୍ଚର୍ଯ୍ୟର କଥା ଏହି ଦ୍ରବ୍ୟଗୁଡିକର ରିସାଇକ୍ଲିଂ ସେଠାରେ କରାଯାଇନଥାଏ । ସେଥିପାଇଁ ବ୍ୟବହୃତ ଦ୍ରବ୍ୟଗୁଡିକର ରିସାଇକ୍ଲିଂ ପାଇଁ ଭାରତ ପରି କେତେକ ରାଷ୍ଟ୍ରକୁ କମ୍ ଦରରେ ବିକ୍ରି କରି ଦେଇଥାନ୍ତି । ଏହାଦ୍ୱାରା ଭାରତର ଜଳ ଓ ପରିବେଶ ସମ୍ପୂର୍ଣ୍ଣ ଦୂଷିତ ହୋଇଯାଇଥାଏ । ଏପରିକି କୋକାକଲା କମ୍ପାନୀ ଆମେରିକାରେ ବୋତଲ ତିଆରି ନକରି ଭାରତରୁ ଆମଦାନୀ କରିଥାଏ !

ମୁନାଫା ଅର୍ଜନର ଅର୍ଥନୈତିକ ସୂତ୍ର ଅନୁସାରେ ବିଶ୍ୱର ପ୍ରତ୍ୟେକ କୋଣ ଓ ଅନୁକୋଣରେ ଥିବା ନୈସର୍ଗିକ ପ୍ରାକୃତିକ ସମ୍ପଦକୁ ଲୁଣ୍ଠନ କରିବାକୁ ଆଗଭର ହୋଇଥାନ୍ତି ବହୁରାଷ୍ଟ୍ରୀୟ ପୁଞ୍ଜିପତି । ଏପରିକି କୌଣସି ଆଗତ ଭବିଷ୍ୟତ ବଂଶଧରମାନଙ୍କ ପାଇଁ ଯେପରି କୌଣସି ସଂପଦ ସୁରକ୍ଷିତ ରଖାଯାଇପାରିବ ନାହିଁ ସେଥିପାଇଁ ମଧ୍ୟ ପୁଞ୍ଜିପତି ବ୍ୟବସ୍ଥା ପରିସ୍ଥିତି ସୃଷ୍ଟି କରିଥାଏ । ଏ କ୍ଷେତ୍ରରେ ସମସ୍ତ ଗଣତାନ୍ତ୍ରିକ ବ୍ୟବସ୍ଥା ମଧ୍ୟ ମୁନାଫା ନିକଟରେ ହାର ମାନିଥାଏ । କେବଳ ଜଳ ନୁହେଁ ସମଗ୍ର ସଂପଦ ଉପରେ ଅଧିକାର ସାବ୍ୟସ୍ତ କରିବା ପାଇଁ ବହୁରାଷ୍ଟ୍ରୀୟ ପୁଞ୍ଜିପତି ଓ ଗଣତାନ୍ତ୍ରିକ ସରକାରଗୁଡିକ ମଧ୍ୟରେ ଗୋପନ ସଂପର୍କ ଥାଏ ।

ବିଶ୍ୱରେ ବ୍ୟାପକ ଶିଳ୍ପାୟନର ପରିଣତ ସ୍ୱରୂପ ଏବଂ ବୃହତ୍ ପ୍ରକଳ୍ପଗୁଡିକ ଉପରେ ସାମ୍ରାଜ୍ୟବାଦୀ ରାଷ୍ଟ୍ରମାନେ ଅଧିକ ଗୁରୁତ୍ୱ ଦେଉଥିବାରୁ ଏ ନେଇ ବହୁ ଜାତୀୟ ଓ ଅନ୍ତର୍ଜାତୀୟ ଚୁକ୍ତି ସ୍ୱାକ୍ଷରିତ ହୋଇଥାଏ ଯେଉଁଥିରେ ଆଞ୍ଚଳିକ ବା ଜାତୀୟ ସ୍ୱାର୍ଥକୁ ପ୍ରାୟତଃ ଜଳାଞ୍ଜଳି ଦେଇ ବହୁରାଷ୍ଟ୍ରୀୟ କମ୍ପାନୀର ସ୍ୱାର୍ଥକୁ ପୂରଣ କରାଯାଇଥାଏ । ସଭ୍ୟତାର ବିକାଶମୂଳରେ ପ୍ରାଥମିକ ଭୂମିକା ଗ୍ରହଣ କରିଥିବା ଜଳକୁ ଏକ ଆନ୍ତର୍ଜାତିକ ପଣ୍ୟ ଭାବେ ବିବେଚନା କରାଯାଇ ମୁଷ୍ଟିମେୟଙ୍କ ସ୍ୱାର୍ଥକୁ ଗୁରୁତ୍ୱ ଦିଆଯାଇଥାଏ । ଏଥିପାଇଁ ଅଧିକାଂଶ ଚୁକ୍ତି / ବାଣିଜ୍ୟିକ ରାଜିନାମାର ଫଳ ହେଉଛି ଜନବିଦ୍ରୋହ ଓ ହିଂସାକାଣ୍ଡ । ଏହାକୁ ଦମନ କରିବା ପାଇଁ ରାଷ୍ଟ୍ର ଯନ୍ତ୍ରର ବ୍ୟବହାର କରାଯାଇଥାଏ ଏବଂ ବିଦ୍ରୋହକୁ ଦମନ କରାଯାଇଥାଏ । ତଥାପି ପ୍ରାକୃତିକ ସଂପଦ ଉପରେ ଘରୋଇ ମାଲିକାନାର ଅଧିକାରକୁ ବିପର୍ଯ୍ୟସ୍ତ କରିବା ପାଇଁ ମୁଣ୍ଡ ଟେକିଥିବା ଅନେକ ଜାତୀୟତାବାଦୀ ଆନ୍ଦୋଳନର ଭବିଷ୍ୟତ ଉଜ୍ଜ୍ୱଳ ହୋଇଥାଏ ।

ଅପ୍ରାକୃତିକ ଖାଉଟୀବାଦର ଅଯାଚିତ ବିକାଶ ଏବଂ ମୁନାଫା ସୃଷ୍ଟିର ଅପହଞ୍ଚ ଆଶା କ୍ଷମତା-ପୁଞ୍ଜି-ରାଷ୍ଟ୍ର ମଧ୍ୟରେ ଅଭୂତପୂର୍ବ ସଂପର୍କ ସୃଷ୍ଟି କରିଥାଏ ଯାହା ବିଶ୍ୱସ୍ତରରେ ସାମ୍ରାଜ୍ୟବାଦକୁ ଶକ୍ତିଶାଳୀ କରିଥାଏ ଏବଂ ଅର୍ଦ୍ଧ-ଶିଳ୍ପୋନ୍ନତ, ଦରିଦ୍ର ତଥା ତୃତୀୟ ବିଶ୍ୱ ପାଇଁ ଏକ ମସ୍ତବଡ ଚ୍ୟାଲେଞ୍ଜର କାରଣ ହୋଇଥାଏ । ବିଭିନ୍ନ ଆନ୍ତର୍ଜାତିକ ବାଣିଜ୍ୟ ରାଜିନାମାକୁ ଆଧାରକରି ପୁଞ୍ଜି ଶୋଷଣର ମାର୍ଗ ଉନ୍ମୋଚନ କରାଯାଇଥାଏ ଏବଂ ତଥାକଥିତ ନ୍ୟାୟିକ ଭାବେ ଶୋଷଣ ପ୍ରକ୍ରିୟା ଜାରି ରଖାଯାଇଥାଏ । ବିଶ୍ୱରେ ଦେଖାଯାଇଥିବା ପ୍ରଚଣ୍ଡ ଜଳ ସମସ୍ୟାରୁ ପ୍ରାଥମିକ ଭାବେ ପ୍ରଥମ ବିଶ୍ୱ ଓ ଆନ୍ତର୍ଜାତିକ ପୁଞ୍ଜିପତିମାନଙ୍କୁ ରକ୍ଷା କରିବା ପାଇଁ ବିଶ୍ୱବ୍ୟାଙ୍କ ଓ ଆନ୍ତର୍ଜାତିକ ମୁଦ୍ରାପାଣ୍ଠି ଆଗେଇ ଆସିଥାନ୍ତି ଏବଂ ବିଭିନ୍ନ ଜଳଚୁକ୍ତି କରିଥାନ୍ତି । ବିଶ୍ୱଜଳ ସମସ୍ୟାରୁ ଯେପରି ମୁନାଫାଖୋରମାନେ ସିଧାସଳଖ ଲାଭ ଉଠାଇପାରିବେ ସେଥିପାଇଁ କ୍ଷେତ୍ର ପ୍ରସ୍ତୁତ କରାଯାଇଛି । ଶେଷରେ ପ୍ରତ୍ୟେକ ଜୀବନ ନାଟିକାକୁ ଯେପରି କମ୍ପାନୀ ହାତରେ ରଖାଯାଇପାରିବ ସେଥିପାଇଁ ସମସ୍ତ ବ୍ୟବସ୍ଥା ମଧ୍ୟ କରାଯାଇଥାଏ । ସାମଗ୍ରିକ ସଂପଦ ଜଳକୁ ଏକ ଘରୋଇ ସଂପଦରେ ପରିଣତ କରି ଏହାର ମୁକ୍ତ ବ୍ୟବସାୟ କ୍ଷେତ୍ରରେ ଥିବା ସମସ୍ତ ପ୍ରତିବଂଧକକୁ ଦୂରେଇ ଦିଆଯାଇଥାଏ ।

ଜଳର ଘରୋଇକରଣ ସମୟରେ ଜଳର ଅଧିକାର, ସଂପଦର ସୁଦୂରପ୍ରସାରୀ ବ୍ୟବହାର, ଦୀର୍ଘକାଳ ସ୍ଥାୟୀତ୍ୱକୁ ଏଡାଇ ଦିଆଯାଇ କମ୍ ସମୟ ମଧ୍ୟରେ ଅଧିକ ପୁଞ୍ଜି ସୃଷ୍ଟିର ସୁଯୋଗ ପ୍ରତି ସର୍ବାଧିକ ଗୁରୁତ୍ୱ ଦିଆଯାଇଥାଏ । ଏଥିପାଇଁ ଯେଉଁ ଯେଉଁ ସହରରେ ଜଳର ଘରୋଇକରଣ କରାଯାଇଛି ସେଠାରେ ଜଳର ବ୍ୟାପକ ସଙ୍କଟ ପରିଲକ୍ଷିତ ହେଲାଣି ଏବଂ ପ୍ରଥମେ ଥିଲାବାଲା ଓ ଶିଳ୍ପପତିମାନଙ୍କୁ ସନ୍ତୁଷ୍ଟ କରାଯାଉଥିବାରୁ ଜଳ ସଂପଦ ଅବକ୍ଷୟ ଅବସ୍ଥା ଦିଗକୁ ଧାବମାନ ହେଉଛି ।

ଏକକ କମ୍ପାନୀ ହାତରେ କୌଣସି ପ୍ରାକୃତିକ ସଂପଦର ଏକଛତ୍ର ମାଲିକାନା ପ୍ରଦାନ କରାଗଲେ ଏହା ସ୍ୱତଃସ୍ଫୂର୍ତ୍ତ ଭାବେ ବ୍ୟାପକ ଗଣତାନ୍ତ୍ରିକ ଅଧିକାରକୁ ଉଲ୍ଲଂଘନ କରିଥାଏ । ଜଳର ମାତ୍ରାଧିକ ଉପଯୋଗ ପାଇଁ ମଧ୍ୟ କମ୍ପାନୀଗୁଡିକ କୌଣସି ସରକାରୀ ନିୟମ ପ୍ରାୟତଃ ମାନି ନଥାନ୍ତି ।

ଜଳ-ପ୍ରକୃତିର ଏକ ମହାର୍ଘ୍ୟ ଉପହାର; ଯାହା ଉପରେ ପୃଥିବୀର ପ୍ରତ୍ୟେକ ଅଣୁଜୀବଠାରୁ ଆରମ୍ଭ କରି ପ୍ରତ୍ୟେକ ବୃହତ୍ ଜୀବର ସମାନ ଅଧିକାର ରହିଛି । ଏହା ଏକ ସର୍ବସାଧାରଣ ସଂପତ୍ତି । ସାମାଜିକ ଓ ଅର୍ଥନୈତିକ ନ୍ୟାୟ ପରି ଜଳର ଅଧିକାର

ମଧ୍ୟ ସମାନ । ଜଳର ଅଧିକାରରୁ ଜଣେ ମଣିଷକୁ ବଞ୍ଚିତ କରିବା ଏକ ଆର୍ନ୍ତଜାତିକ ଅପରାଧ ।

ଜଳର ଘରୋଇକରଣ ମୁଖ୍ୟତଃ ଆଞ୍ଚଳିକ ବୈଷମ୍ୟ ସୃଷ୍ଟିକୁ ଅଧିକ ମଜଭୁତ କରିବା ସହ ଅଞ୍ଚଳ ଅଞ୍ଚଳ ମଧ୍ୟରେ ସଂଘର୍ଷ ସୃଷ୍ଟି କରିବ ଏବଂ ସଂପଦ ବଣ୍ଟନରେ ବ୍ୟାପକ ପାର୍ଥକ୍ୟ ସୃଷ୍ଟି କରିବ । ଏହା ମଧ୍ୟ ନୂଆ ନୂଆ ସଂଘର୍ଷକୁ ଜନ୍ମ ଦେବ ।

ସୀମିତ ସଂପଦ ଭାବେ ପରିଗଣିତ ଜଳର ଘରୋଇ ମାଲିକାନା ଯେଉଁ ଭାବରେ ବଳଶାଳୀ ଓ ପ୍ରସାରିତ ହେବ ସେହି ହାରରେ ଏହାର ପ୍ରଭାବ ସାଧାରଣ ଜନତାଙ୍କ ଉପରେ ପଡିବା ସ୍ୱାଭାବିକ । ଏକ ବୃହତ୍ତ ସାମାଜିକ ବୈଷମ୍ୟ ତିଆରି କରିବାରେ ପ୍ରମୁଖ ଭୂମିକା ନେଉଥିବା ଜଳର ଘରୋଇକରଣ ଅନିୟନ୍ତ୍ରିତ ମୁକ୍ତ ବଜାରରେ ଏକ କୃତ୍ରିମ ପରିସ୍ଥିତି ସୃଷ୍ଟି କରିଥାଏ ଯାହା ସାଧାରଣତଃ ଜୀବନର ଅଧିକାର ଉପରେ ଚାଲେଞ୍ଜ୍ ସୃଷ୍ଟି କରିଥାଏ ।

ଜଳର ଘରୋଇକରଣ କ୍ଷେତ୍ରରେ ଉତ୍ତର ଓ ଦକ୍ଷିଣ ଗୋଲାର୍ଦ୍ଧ ମଧ୍ୟରେ ବିଶ୍ୱ ଜଳ ସମାନତା ପରିମାପକ ହ୍ରାସ ପାଉଛି । ତୃତୀୟ ବିଶ୍ୱ ଏ କ୍ଷେତ୍ରରେ ଯଥେଷ୍ଟ କ୍ଷତିର ଶିକାର ହୋଇଛି । ଏପରିକି ତୃତୀୟ ବିଶ୍ୱରୁ ପ୍ରାକୃତିକ ସଂପଦ ଲୁଣ୍ଠନ ପ୍ରକ୍ରିୟା ମଧ୍ୟରୁ ଜଳ ମଧ୍ୟ ବାଦ ପଡୁନାହିଁ । ପ୍ରତ୍ୟେକ ବିଦେଶୀ ପୁଞ୍ଜି ବିନିଯୋଗ ମୂଳରେ ଜଳର ଘରୋଇକରଣ ପ୍ରତି ସର୍ବାଧିକ ଗୁରୁତ୍ୱ ଦିଆଯାଉଛି । ତୃତୀୟ ବିଶ୍ୱ ରାଷ୍ଟ୍ରଗୁଡିକରେ ଯେପରି ଧନ-ଜୀବନ-ପ୍ରାକୃତିକ ସଂପଦ ଧ୍ୱଂସ ହେବ ସେଥିପାଇଁ ଉତ୍ତରାର୍ଦ୍ଧ ରାଷ୍ଟ୍ର ସମୂହ ଚକ୍ରାନ୍ତ କରି ଆସୁଛନ୍ତି । ବିଶ୍ୱର ଅଧିକାଂଶ ପ୍ରାଚୀନ ଜନଜାତି ମଧ୍ୟ ଜଳର ଘରୋଇକରଣ ଯୋଗୁ ନାନା ବିପଦର ସମ୍ମୁଖୀନ ହେଉଛନ୍ତି ।

ଜଳର ଘରୋଇକରଣ ଯୋଗୁ କେବଳ ତୃତୀୟ ରାଷ୍ଟ୍ରରେ ଏହାର ପ୍ରତିକ୍ରିୟା ପରିଲକ୍ଷିତ ହୋଇନଥାଏ ବରଂ ଧନଶାଳୀ ରାଷ୍ଟ୍ରମଧ୍ୟ ଏହାର ଶିକାର ହେଉଥିବା ଦେଖାଯାଇଛି । ଏପରିକି ମାର୍ଗାରେଟ ଥାଚ୍‌ରଙ୍କ ସମୟରେ ଧନଶାଳୀ ବ୍ରିଟେନର ଲୋକମାନେ ଚିନ୍ତା କରୁଥିଲେ ସେମାନେ ସେମାନଙ୍କର ଖାଦ୍ୟ ଧୋଇବେ କି ନାହିଁ, କେତେଥର ଗାଧୋଇବାକୁ ହେବ ଏବଂ ପାଇଖାନା ସଫା କରିବେ କି ନାହିଁ । ଜଳ ଉପରେ ମାତ୍ରାଧିକ ଶୁଳ୍କ ଯୋଗୁ ଏହି ପରିସ୍ଥିତି ସୃଷ୍ଟି ହୋଇଥିଲା ।



# ଜଳର ଘରୋଇକରଣର ଗୁମର କଥା

ପ୍ରତ୍ୟେକ ଘରୋଇକରଣ ମୂଳରେ ସାଧାରଣତଃ କିକ୍‌ବ୍ୟାକ୍ ଏକ ପ୍ରାଥମିକ କାରଣ ହୋଇଥାଏ । ବିଶେଷ କରି ତୃତୀୟ ବିଶ୍ୱ ରାଷ୍ଟ୍ରରେ କରାଯାଇଥିବା ଅନେକ ଚୁକ୍ତି ମୂଳରେ କିକ୍‌ବ୍ୟାକ୍ ଏକ ମାମୁଲି ଘଟଣା ଭାବେ ପରିଗଣିତ । ସେହିପରି ଜଳ ଚୁକ୍ତିଗୁଡ଼ିକ କ୍ଷେତ୍ରରେ ମାତ୍ରାଧିକ କିକ୍‌ବ୍ୟାକ୍ ଦିଆଯାଇଥାଏ । ବହୁରାଷ୍ଟ୍ରୀୟ କମ୍ପାନୀଗୁଡ଼ିକ ବିଭିନ୍ନ ଚୁକ୍ତି ନିମନ୍ତେ ପ୍ରଚୁର କିକ୍‌ବ୍ୟାକ୍ ଦେଇ ଯେ କୌଣସି ଚୁକ୍ତିକୁ ସାକାର କରିବାରେ ସକ୍ଷମ ହୋଇଥାନ୍ତି । ଅଷ୍ଟ୍ରିଆ, ବେଲଜିୟମ, ଫ୍ରାନସ୍, ଇଟାଲୀ, ଜର୍ମାନୀ, ସ୍ପେନ୍, ବ୍ରିଟେନ ଓ ଆମେରିକା ଆଦି ରାଷ୍ଟ୍ରରେ ଯେଉଁ ଯେଉଁ କମ୍ପାନୀକୁ ଜଳ ବଣ୍ଟନ ଦାୟିତ୍ୱ ଦିଆଯାଇଛି ସେହି ସମସ୍ତ କମ୍ପାନୀ ପ୍ରଚୁର କିକ୍‌ବ୍ୟାକ୍ ଦେଇଥିବା ପ୍ରମାଣ ମିଳିଛି । ଏପରିକି ୟୁରୋପୀୟ ରାଷ୍ଟ୍ର ସଙ୍ଘର ସର୍ବୋଚ୍ଚ କର୍ତ୍ତୃପକ୍ଷ ୟୁରୋପୀୟ କମିଶନ ନାମରେ ମଧ୍ୟ ଦୁର୍ନୀତି ଅଭିଯୋଗ ଉଠିଛି ।

ଜଳର ଘରୋଇକରଣ ପରିପେକ୍ଷୀରେ ପ୍ରଥମେ ଫ୍ରାନସରେ ଏକ ଦୁର୍ନୀତି ପଦାକୁ ଆସିଥିଲା ଏବଂ ୧୯୯୬ରେ ଗ୍ରେନୋବଲ ସହରର ମେୟରଙ୍କୁ ଲାଞ୍ଚ ଦେଇ ଜଳ ଠିକା ପ୍ରଦାନ କରିବା ଅଭିଯୋଗରେ ଜେଲ ଦଣ୍ଡ ମିଳିଥିଲା । ୟୁରୋପୀୟ ୟୁନିଅନ, ଇଟାଲୀରେ ମଧ୍ୟ ଅନେକ ଦୁର୍ନୀତି ମୋକଦମା ଚାଲୁ ରହିଛି । ଲେସୋଥୋରେ ୧୨ଟି ଘରୋଇ ବହୁରାଷ୍ଟ୍ରୀୟ କମ୍ପାନୀ ବିରୋଧରେ ଲାଞ୍ଚ ପ୍ରଦାନ ଅଭିଯୋଗରେ ମାମଲା ଦାଏର କରାଯାଇଛି । ଇଣ୍ଡୋନେସିଆର ସୁହାର୍ତ୍ତୋଙ୍କ ଶାସନ ସମୟରେ ରାଜଧାନୀ ଜାକର୍ତାରେ ଜଳବଣ୍ଟନ ଦାୟିତ୍ୱ ବ୍ରିଟିଶ୍ ଓ ଫ୍ରେଞ୍ଚର ବହୁରାଷ୍ଟ୍ରୀୟ କମ୍ପାନୀକୁ ଦିଆଯାଇଥିଲା ଯେଉଁ କମ୍ପାନୀରେ ସୁହାର୍ତ୍ତୋଙ୍କ ବଂଶଧରମାନେ ସାମିଲ ଥିଲେ ।

ଜଳ ବଣ୍ଟନ ପରି ଏକ ପବିତ୍ର ଓ ମାନବିକ କାର୍ଯ୍ୟକୁ ତୁଲାଇବା ପାଇଁ ଗଣତାନ୍ତ୍ରିକ ଉପାୟରେ ନିର୍ବାଚିତ ସରକାରଗୁଡ଼ିକ ଏଣିକି ଚାହୁଁ ନାହାନ୍ତି । ଜଳର ବଣ୍ଟନ ନିମନ୍ତେ ଆବଶ୍ୟକ ମାନବ ଶକ୍ତି ଦେଶ ନିକଟରେ ଗଚ୍ଛିତ ଥିଲେ ମଧ୍ୟ ଦୁର୍ନୀତି ଓ

କିକ୍‌ବ୍ୟାକ ଯୋଗୁ ବହୁରାଷ୍ଟ୍ରୀୟ କମ୍ପାନୀଗୁଡ଼ିକ ହାତରେ ଜଳ ବଣ୍ଟନ ଦାୟିତ୍ୱ ଅର୍ପଣ କରି ଦିଆଯାଉଛି । ଆଶ୍ଚର୍ଯ୍ୟର କଥା ଯେଉଁ ଯେଉଁ ବହୁରାଷ୍ଟ୍ରୀୟ କମ୍ପାନୀ ଦୁର୍ନୀତି ଓ କିକ୍‌ବ୍ୟାକ୍ କରିଥାରେ ଜଳଚୁକ୍ତିମାନ ସଂପର୍କ କରୁଛନ୍ତି ସେହି କମ୍ପାନୀଗୁଡିକୁ ବିଶ୍ୱବ୍ୟାଙ୍କ ଓ ଅନ୍ତର୍ଜାତିକ ମୁଦ୍ରାପାଣ୍ଠି ପୂର୍ଣ୍ଣ ସହଯୋଗ କରୁଛନ୍ତି ଏବଂ ଅଧିକରୁ ଅଧିକ ଅର୍ଥ ସହାୟତା ପ୍ରଦାନ କରୁଛନ୍ତି ।

ସିଂଗାପୁର ସରକାର ଜଳର ବଣ୍ଟନ ପାଇଁ ଆଗ୍ରହୀ ୫ଟି ବହୁରାଷ୍ଟ୍ରୀୟ କମ୍ପାନୀକୁ କୌଣସି ପ୍ରକାର ଚୁକ୍ତିରେ ସ୍ୱାକ୍ଷର କରିବା ପାଇଁ ବାରଣ କରିଛନ୍ତି । ଜଣେ ମିଡ଼ଲମ୍ୟାନ ଏହି ଚୁକ୍ତି କରାଇ ଦେବା ନିମନ୍ତେ ୧୦ନିୟୁତ ଡଲାର ନେଇଛନ୍ତି ବୋଲି ଅଭିଯୋଗ ପ୍ରକାଶିତ ହେବା ପରେ ସରକାର ଏହି ଧରଣର ପଦକ୍ଷେପ ନେଇଛନ୍ତି । ଜଳଚୁକ୍ତି ମୂଳରେ ମୁଖ୍ୟତଃ ମଣିଷର ରାଜନୈତିକ, ଗଣତାନ୍ତ୍ରିକ ଓ ଅର୍ଥନୈତିକ ଅଧିକାର କ୍ଷୁର୍ଣ୍ଣ କରାଯାଇଥାଏ ଏବଂ କିକ୍‌ବ୍ୟାକ୍‌କୁ ପ୍ରାଥମିକତା ଦିଆଯାଇଥାଏ । ଭାରତରେ ମଧ୍ୟ ଜଳ ଚୁକ୍ତି ନାମରେ ପ୍ରଚୁର କିକ୍‌ବ୍ୟାକ ପ୍ରକ୍ରିୟା ଅବ୍ୟାହତ ରହିଛି ।



# ଗାଟ୍‌ସ୍ ଓ ଜଳ

ବିଶ୍ୱରେ ଜଳର ଆବଶ୍ୟକତାକୁ ଆଖିଆଗରେ ରଖି ଏବଂ ଏହାର ବାଣିଜ୍ୟକୁ ପ୍ରାଥମିକତା ପ୍ରଦାନ କରି ବିଶ୍ୱବାଣିଜ୍ୟ ସଂଗଠନ (World Trade Organisation-WTO)ର ପ୍ରତ୍ୟେକ ମନ୍ତ୍ରୀସ୍ତରୀୟ ଆଲୋଚନାରେ ଜଳ ସଂକ୍ରାନ୍ତରେ ଆଲୋଚନା ହୋଇଆସୁଛି । ପୃଥିବୀରେ ଏକ ପ୍ରକାର ପାଟେଣ୍ଟ ଆଇନ ଲାଗୁ କରିବା ପରି ପୃଥିବୀରେ ଏକ ପ୍ରକାର ଜଳନୀତିକୁ କାର୍ଯ୍ୟକାରୀ କରି ଆମେରିକା, ବ୍ରିଟେନ, ଫ୍ରାନ୍‌ସ ଓ କାନାଡାର ବହୁରାଷ୍ଟ୍ରୀୟ ଜଳ କମ୍ପାନୀଗୁଡିକୁ ସୁଯୋଗ ଦେବା ନିମନ୍ତେ ଏହି ମନ୍ତ୍ରୀସ୍ତରୀୟ ଆଲୋଚନାରେ ନିଷ୍ପତ୍ତି ନିଆଯାଇ ଆସୁଛି । ଗାଟ୍(General Agreement on Trade and Tariff - GATT) ରାଜିନାମା ଅନୁସାରେ ଜଳର ବ୍ୟବସାୟକୁ ପ୍ରାଥମିକତା ପ୍ରଦାନ କରାଯାଇ ଆସୁଛି । ଉଦାହରଣ ସ୍ୱରୂପ ୨୦୦୧ ନଭେମ୍ବର ମାସରେ ଦୋହାଠାରେ ଆୟୋଜିତ ବିଶ୍ୱବାଣିଜ୍ୟ ସମ୍ମିଳନୀ ପରିପ୍ରେକ୍ଷୀରେ ଜଳ ବ୍ୟବସାୟକୁ ଏଜେଣ୍ଡାରେ ରଖିବା ପାଇଁ ଆମେରିକା ଚାପ ପ୍ରୟୋଗ କରି ସଫଳ ହୋଇଥିଲା । ଜଳ ଓ ପ୍ରାକୃତିକ ସଂପଦର ତଥାକଥିତ ବିଶ୍ୱ ବ୍ୟବସାୟରେ ଯେପରି କୌଣସି ପ୍ରତିବନ୍ଧକ ରହିବ ନାହିଁ ସେଥିପାଇଁ ମଧ୍ୟ ଏଥିରେ ନିଷ୍ପତ୍ତି ନିଆଯାଇଥିଲା ।

ବିଶ୍ୱ ବାଣିଜ୍ୟ ସମ୍ମିଳନୀ ନାମରେ ପୃଥିବୀରେ ନାନାପ୍ରକାର ବାଣିଜ୍ୟିକ ଭାରସାମ୍ୟ ନଷ୍ଟ କରିବା ହେଉଛି ସାମ୍ରାଜ୍ୟବାଦୀ ଶକ୍ତିମାନଙ୍କ ଭିତିରି ଉଦ୍ଦେଶ୍ୟ । ଜଳବଣ୍ଟନକାରୀ କମ୍ପାନୀ ଦୂଷିତ ଜଳ ବଣ୍ଟନ କଲେ ମଧ୍ୟ ସରକାରୀ ନିୟମ ଯେପରି ଏହି କମ୍ପାନୀକୁ ଲାଗୁ ହେବ ନାହିଁ ସେଥିପାଇଁ ମନ୍ତ୍ରୀସ୍ତରୀୟ ବୈଠକରେ ମଧ୍ୟ ଆଲୋଚନା ହୋଇଛି ।

କାନାଡ଼ାର ଓଣ୍ଟାରିଓରେ ଏକ ଘରୋଇ ଜଳ ବଣ୍ଟନକାରୀ କମ୍ପାନୀ ଦୂଷିତ ଜଳ ବଣ୍ଟନ କରିଥିଲା । ପାଇପ୍ ଜଳ ଜରିଆରେ ଇ-କୋଲି ସମେତ ଅନେକ ବିଷାକ୍ତ ଅଣୁଜୀବର ପ୍ରସାର ହେବାରୁ ଅନେକ ଲୋକ ମୃତ୍ୟୁବରଣ କରିଥିଲେ ମଧ୍ୟ କମ୍ପାନୀ

ବିରୋଧରେ କୌଣସି ପଦକ୍ଷେପ ନିଆଯାଇ ପାରି ନଥିଲା । ଦକ୍ଷିଣ ଆଫ୍ରିକାରେ 'ସଉର' କମ୍ପାନୀ ଜଳ ବଣ୍ଟନ ଦାୟିତ୍ୱ ନେବାପରେ ଜଳ ଦର ୧୪୦ ପ୍ରତିଶତ ବୃଦ୍ଧି କରିଥିଲା । ଫିଲିପାଇନ୍‌ସରେ ମଧ୍ୟ 'ଓଣ୍ଡିଓ' ଉପଯୁକ୍ତ ଜଳସେବା ନ କରିପାରିବାରୁ ଏହାର ଅର୍ଥ ବାଜ୍ୟାପ୍ତି ହୋଇଥିଲା ।

ପୃଥିବୀରେ ଏକ ପ୍ରକାର ବାଣିଜ୍ୟକ ନିୟମ ଲାଗୁକରି ଏହା ଜରିଆରେ ବିଭିନ୍ନ ନିୟମ କାନୁନକୁ ଲଦିଦେବା ପାଇଁ ବଶ୍ୱବାଣିଜ୍ୟ ସଂଗଠନ ଓ ଗାଟ୍ ଅନୁସାରେ ଚାପ ପ୍ରୟୋଗ କରାଯାଉଛି । ୨୦୦୫ରେ ଅନୁଷ୍ଠିତ ବିଶ୍ୱବାଣିଜ୍ୟ ସମ୍ମିଳନୀରେ ୟୁରୋପୀୟ ରାଷ୍ଟ୍ରସଂଘର ଦାବିଗ୍ରହଣ କରାଯାଇଥିଲା ଏବଂ ଜଳକୁ ବାଣିଜ୍ୟିକ ଦ୍ରବ୍ୟ ପରିସରଭୁକ୍ତ କରାଯାଇଥିଲା । ବିଶ୍ୱ ବାଣିଜ୍ୟ ସମ୍ମିଳନୀର କାନ୍‌କୁନ୍ ବୈଠକରେ ଅନେକ ସ୍ୱେଚ୍ଛାସେବୀ ଦାବି କରିଥିଲେ ଯେ ଜଳକୁ ଗାଟ୍‌ସ ପରିସରଭୁକ୍ତ କରାନଯାଉ ଏବଂ ବିନିଯୋଗକାରୀଙ୍କ ଅଧିକାର ଓ ମାନବାଧିକାର ମଧ୍ୟରେ ପାର୍ଥକ୍ୟ ନିରୂପଣ କରାଯାଉ । ଅର୍ଥନୈତିକ ଉଦାରୀକରଣ ନାମରେ ବିଶ୍ୱବ୍ୟାପୀ ଯେଉଁ ପ୍ରକ୍ରିୟା ଦେଖାଯାଉଛି ସେଥିରେ ଜୀବନ ରକ୍ଷକ ଦ୍ରବ୍ୟଗୁଡିକର ଅଧିକାର ଉପରୁ ମଣିଷ ସମାଜକୁ ବଞ୍ଚିତ କରାଯାଇ ଏହାକୁ ମୁନାଫା ଅର୍ଜନର ମାଧ୍ୟମ ବୋଲି ଗ୍ରହଣ କରାଯାଉଛି ।

ସଂପ୍ରତି ପୃଥିବୀରେ ଅର୍ଥନୈତିକ ମାଲିକାନା ସୃଷ୍ଟି କରିବାକୁ ସଂଘବଦ୍ଧ ଭାବେ ଉଦ୍ୟମ କରୁଥିବା ଗ୍ରୁପ-୮ ରାଷ୍ଟ୍ରଗୋଷ୍ଠୀ- ଆମେରିକା, ଜର୍ମାନୀ, କାନାଡ଼ା, ଜାପାନ, ଇଟାଲୀ, ଫ୍ରାନସ୍, ଜର୍ମାନୀ ଓ ଋଷିଆ ପୃଥିବୀର ପ୍ରତ୍ୟେକ ରାଷ୍ଟ୍ରର ବିଭିନ୍ନ ନୀତିଉପରେ ହସ୍ତକ୍ଷେପ କରି ସାମ୍ରାଜ୍ୟବାଦୀ ମାଲିକାନା ବିସ୍ତାର କରିଛନ୍ତି । ସୋଭିଏତ ଋଷ୍‌ର ପତନ ପରେ ଶକ୍ତିଶାଳୀ ପ୍ରଜାତନ୍ତ୍ର ଭାବେ ମୁଣ୍ଡ ଟେକିଥିବା ଋଷିଆ ଏବଂ ମାଓସେତୁଂଗ ଅନୁପ୍ରାଣୀତ ଚାଇନା ସଂପ୍ରତି ଆମେରିକାର ହାତ କଣ୍ଢେଇରେ ପରିଣତ ହୋଇଛି । ଚାଇନାର ଶାସକ ଗୋଷ୍ଠୀ ଆମେରିକାର ପ୍ରତ୍ୟେକ ନିର୍ଦ୍ଦେଶକୁ ମାନୁଥିବା ବେଳେ ଆମେରିକାର ବେଆଇନ ଆକ୍ରମଣ ପ୍ରତି ଆଖି ବୁଜି ଦେଉଛନ୍ତି ।

ଜଗତୀକରଣ ଆଳରେ ପୃଥିବୀର ପ୍ରାକୃତିକ ସଂପଦର ୮୦ଭାଗ ଶୋଷଣ କରିବା ପାଇଁ ଉଦ୍ୟତ ଗ୍ରୁପ-୮କୁ ଚାଲେଞ୍ଜ କରିବା ପାଇଁ ଆଉ କୌଣସି ମେଣ୍ଟ ମଧ୍ୟ ନାହିଁ । ନବ୍ୟ ସାମ୍ରାଜ୍ୟବାଦୀ ମାଲିକାନା ସ୍ୱରୂପ ଗ୍ରୁପ-୮ର ପ୍ରତ୍ୟେକ ସଦସ୍ୟ ନିଜ ନିଜର ଉପନିବେଶ କ୍ଷେତ୍ରକୁ ବାଛି ନେଉଛନ୍ତି ଏବଂ ନିଜର ବ୍ୟାବସାୟିକ ସ୍ୱାର୍ଥକୁ ପରିସୀମାଭୁକ୍ତ କରିଛନ୍ତି । ଯୁଦ୍ଧ ସରଞ୍ଜାମର ବ୍ୟବସାୟ ପରି ଜଳର ବ୍ୟବସାୟକୁ ମଧ୍ୟ

ଗୁରୁତ୍ୱ ଦିଆଯାଇଛି ଏବଂ ପୃଥିବୀର ଜୀବନ ନାଡିକାକୁ ସେମାନେ ନିଜ ହାତ ମୁଠାରେ ରଖିଛନ୍ତି ।

୧୯୯୫ ଜାନୁଆରୀ ୧ ତାରିଖରେ ବିଶ୍ୱବାଣିଜ୍ୟ ସଂସ୍ଥାର ଜନ୍ମ ପରଠାରୁ ଯେଉଁ ସବୁ ନୀତିନିୟମ କାର୍ଯ୍ୟକାରୀ କରାଯାଇଛି, ସେସବୁ ଶିଳ୍ପୋନ୍ନତ ରାଷ୍ଟ୍ରର ସ୍ୱାର୍ଥ ପୂରଣ ପାଇଁ ହିଁ କରାଯାଇଛି । ବିଶ୍ୱ ବାଣିଜ୍ୟରେ ଭାରତର ଅଂଶ ୦.୬ ପ୍ରତିଶତ ହୋଇଥିବା ସତ୍ତ୍ୱେ ଭାରତ ଏହି ଚୁକ୍ତିରେ ସ୍ୱାକ୍ଷର କରିବା ଯୋଗୁ ପ୍ରଭୂତ କ୍ଷତି ସହିବାକୁ ପଡୁଛି । ୧୯୮୬ରୁ ୧୯୯୩- ଏହି ୭ବର୍ଷ ମଧ୍ୟରେ 'ଗାଟ୍'ର ଉରୁଗୁଏ ପର୍ଯ୍ୟାୟ ଆଲୋଚନାରେ ପ୍ରାକୃତିକ ସଂପଦର ମାଲିକାନା, ମେଧା ସଂପଦ, ସବ୍‌ସିଡି ପ୍ରତ୍ୟାହାର, ଲୁଗା ବ୍ୟବସାୟରେ କୋଟା ନୀତି, ବିକାଶଶୀଳ ରାଷ୍ଟ୍ରକୁ ରପ୍ତାନୀ ବୃଦ୍ଧି ଉପରେ ଆମେରିକା ଗୁରୁତ୍ୱ ଦେଇ ଆସୁଥିଲା । ଗ୍ରୁପ-୭ ହେଉ ବା ଗ୍ରୁପ-୮ ଏହି ରାଷ୍ଟ୍ରମେଣ୍ଟ ଜରିଆରେ ପୃଥିବୀର ଗରୀବରାଷ୍ଟ୍ରଗୁଡିକରୁ ସଂପଦର ଚାଲାଣ କରାଗଲା ବେଳେ ବିଦେଶୀ କମ୍ପାନୀଗୁଡିକ ନିମନ୍ତେ ବଜାରକୁ ଖୋଲିଦେବା ପାଇଁ ପଥ ପରିଷ୍କାର କରି ଦିଆଗଲା । ଜଳର ମାଲିକାନା ଏଥିରୁ ବାଦ ପଡ଼ନ୍ତା ବା କିପରି ? ଖୁବ୍ କମ୍ ବ୍ୟୟରେ ଜଳ ସଂପଦକୁ ଉପଯୋଗ କରି ପ୍ରଭୂତ ପୁଞ୍ଜି ଆଦାୟ ଲକ୍ଷ୍ୟରେ ପରିଚାଳିତ ବହୁରାଷ୍ଟ୍ରୀୟ କମ୍ପାନୀମାନଙ୍କ ପାଇଁ ଭାରତୀୟ ମୁକ୍ତ ବଜାର ଅର୍ଥନୀତି ଏକ ପ୍ରଖ୍ୟାତ ଆଶୀର୍ବାଦ ହିଁ ହୋଇଛି ।

## ସ୍ୱଚ୍ଛଜଳ ଓ ନିର୍ମଳ ପରିବେଶର ସୁଯୋଗ ପାଉଥିବା ଜନସାଧାରଣଙ୍କ ଦେଶଓ୍ୱାରୀ ତାଲିକା

| ଦେଶ | ସ୍ୱଚ୍ଛଜଳ ପାଉଥିବା ଲୋକସଂଖ୍ୟା | ନିର୍ମଳ ପରିବେଶରେ ବାସ କରୁଥିବା ଲୋକସଂଖ୍ୟା |
|---|---|---|
| ଆଫଗାନିସ୍ଥାନ | ୧୩% | ୮% |
| ଇଥିଓପିଆ | ୨୨% | ୬% |
| ସୋମାଲିଆ | ୨୯% | ୨୫% |
| କାମ୍ବୋଡିଆ | ୩୪% | ୧୬% |
| ଚାଦ | ୩୪% | ୮% |
| ପପୁଆନ୍ୟୁଗିନ | ୩୯% | ୪୫% |

| | | |
|---|---|---|
| ମୋଜାମ୍ବିକ | ୪୨% | ୨୭% |
| ଡୋମିନିକାନ | ୪୩% | ୨୪% |
| ମାଡାଗାସ୍କର | ୪୫% | ୩୩% |
| କଂଗୋ | ୪୬% | ୯% |
| ନାଇଜର | ୪୬% | ୨୯% |
| ମାଲି | ୪୮% | ୪୫% |
| ଭାରତ | ୪୮% | ୩୫% |
| ପାକିସ୍ତାନ | ୩୬% | ୩୪% |
| ବାଂଲାଦେଶ | ୪୪% | ୪୮% |
| ଶ୍ରୀଲଙ୍କା | ୪୩% | ୩୮% |

□□□

# 'ଜଳ' ଏକ ଅଧିକାର

ଜଳ ପ୍ରକୃତିର ଏକ ମହାର୍ଘ୍ୟ ସଂପଦ ଏବଂ ଏହାକୁ ନେଇ ବ୍ୟବସାୟ କରିବା ଅନୁଚିତ । ପୃଥିବୀର ପ୍ରତ୍ୟେକ ଜୀବଜନ୍ତୁର ବଞ୍ଚିବାର ଅଧିକାର ରହିଛି ଏବଂ ଜଳ, ବାୟୁ ଓ ପ୍ରାକୃତିକ ସଂପଦ ଉପରେ ସମସ୍ତଙ୍କ ସମାନ ଅଧିକାର ରହିଛି । ମାତ୍ର ଜଳକୁ ପୁଞ୍ଜି ଅର୍ଜନର ଏକ ମାଧ୍ୟମ କରାଯାଉଥିବାରୁ ବିଶ୍ୱରେ ଏହା ବିରୋଧରେ ଜନମତ ଜାଗ୍ରତ ହେଉଛି ।

ଗତ ୨୦୦୨ରେ ପ୍ରଥମ ଥର ପାଇଁ ପୃଥିବୀର ୧୪୫ଟି ରାଷ୍ଟ୍ର ଅର୍ଥନୈତିକ ଓ ସାଂସ୍କୃତିକ ଅଧିକାର ସମ୍ମିଳନୀ (Convenant of Economic & Cultural Rights - CESCR)ରେ ଏକତ୍ରିତ ହୋଇ ଜଳ ଏକ ଅଧିକାର ବୋଲି ବିବେଚନା କରିଥିଲେ । ପ୍ରତ୍ୟେକ ମଣିଷ ଯେପରି ସମାନ ପରିମାଣର ବିଶୁଦ୍ଧ ଜଳ ପାଇପାରିବେ ସେଥିପାଇଁ ଏହି ସମ୍ମିଳନୀରେ କାର୍ଯ୍ୟପନ୍ଥା ଗ୍ରହଣ କରାଯାଇଛି । ଏଥିପାଇଁ ଜଳର ବ୍ୟବହାର ଓ ଅଧିକାର ନେଇ ସ୍ୱଷ୍ଟନୀତି ମଧ୍ୟ ନିର୍ଦ୍ଧାରଣ କରାଯାଇଥିଲା । କୌଣସି ଘରୋଇକ୍ଷେତ୍ର ଯେପରି ଜଳଦ୍ୱାରା ବ୍ୟବସାୟ କରିବାର ସୁଯୋଗ ପାଇବ ନାହିଁ ସେଥିପାଇଁ ଏଥିରେ ଚିଠା ନିର୍ଦ୍ଧାରଣ କରାଯାଇଥିଲା । ସ୍ୱାସ୍ଥ୍ୟଗତ ଅଧିକାର(୨୦୦୨), ଶିଶୁ ଅଧିକାର ସମ୍ମିଳନୀ (୧୯୮୯), ମହିଳାମାନଙ୍କ ବିରୋଧରେ ଚାଲିଥିବା ସମସ୍ତ ନିର୍ଯାତନାର ଅବସାନ ସମ୍ମିଳନୀ (୧୯୭୯), ଇତ୍ୟାଦିକୁ ଆଖି ଆଗରେ ରଖି ଜଳ ଅଧିକାର ସଂକ୍ରାନ୍ତ ନିୟମାବଳୀ ପର୍ଯ୍ୟବେସିତ ହୋଇଥିଲା । ଏହାଛଡା ପ୍ରଦୂଷଣଯୁକ୍ତ ଜଳ ବିରୋଧରେ ସଂଗ୍ରାମ କରିବାକୁ ସମ୍ମିଳନୀରେ ନିଷ୍ପତ୍ତି ନିଆଯାଇଥିଲା ।

ମାର୍ଚ୍ଚ ୨୨ରେ ବିଶ୍ୱଜଳ ଦିବସ ପାଳନ କରାଯାଉଥିବା ସତ୍ତ୍ୱେ ଏ ଯାଏ ପୃଥିବୀର ଅଧିକାଂଶ ରାଷ୍ଟ୍ରରେ ଜଳ ଅଧିକାର ସାବ୍ୟସ୍ତ ହୋଇପାରି ନାହିଁ । ଜାତିସଂଘ ଦ୍ୱାରା ପ୍ରକାଶିତ ବିଶ୍ୱ ଜଳ ବିକାଶ ରିପୋର୍ଟ ଅନୁସାରେ ପୃଥିବୀର ପ୍ରାୟ ଦୁଇ ତୃତୀୟାଂଶ ଲୋକ ବିଶୁଦ୍ଧ ଜଳ ସଂଧାନରେ ରହିଛନ୍ତି । ଜଳର ମାନଗତ ପରିବର୍ତ୍ତନ, ଅଣବିଶୋଧିତ ଜଳ, ମୂଲ୍ୟ ଯୁକ୍ତ ଜଳ, ଇତ୍ୟାଦି ଉପରେ ବିତର୍କ କରାଯାଇ ଜଳକୁ ଯେପରି ନିରଙ୍କୁଶ

ଭାବେ ସମସ୍ତଙ୍କ ନିକଟରେ ପହଞ୍ଚାଯାଇପାରିବ ସେଥିପାଇଁ ଆନ୍ତର୍ଜାତିକ ସହମତି ରହିଥିବା ସତ୍ତ୍ୱେ ଅନେକ ରାଷ୍ଟ୍ର ଏହାକୁ ଗୁରୁତ୍ୱ ଦେଇ ନଥାନ୍ତି । ମାନବାଧିକାର ସଂକ୍ରାନ୍ତ ଆଇନ ସମୂହ ମୁଖ୍ୟତଃ ବଞ୍ଚିବାର ମୌଳିକ ଅଧିକାରକୁ ସାବ୍ୟସ୍ତ କରିଥାଏ । ମାତ୍ର ଦେଖାଯାଏ ଯେ ବିକାଶ ମୂଳକ ପ୍ରକ୍ରିୟା ନାମରେ ମାନବାଧିକାରକୁ ବ୍ୟାପକ ଉଲଂଘନ କରାଯାଉଛି ଏବଂ ବଞ୍ଚିବାର ନ୍ୟାଯ୍ୟ ଅଧିକାରକୁ ଛଡାଇ ନିଆଯାଉଛି ।

ମହାନ ବିବର୍ତ୍ତନବିତ୍ ଚାର୍ଲସ ଡ଼ାରଉଇନ କହିଥିଲେ- ପ୍ରକୃତିର ନିୟମ ବଦଳରେ ଯଦି ଆମ ଦ୍ୱାରା ପ୍ରତିଷ୍ଠିତ ଅନୁଷ୍ଠାନଗୁଡିକ ଜରିଆରେ ଗରୀବମାନଙ୍କର ଦୁଃଖ ଦୁର୍ଦ୍ଦଶା ବୃଦ୍ଧି ପାଏ ତେବେ ତାହା ହେଉଛି ଆମମାନଙ୍କର ବୃହତ୍ ପାପ । (If the misery of our poor be caused not by the laws of nature, but by our institutions, great is our sin)

ବାସ୍ତବରେ ଜଳ ବିନା ପୃଥିବୀରେ ଜୀବନ ସମ୍ଭବ ନୁହେଁ । ଜୀବନ ବିନା ସଭ୍ୟତା ସମ୍ଭବ ନୁହେଁ । ଏଣୁ ଜଳ ହିଁ ସଭ୍ୟତାର ପ୍ରାଥମିକ ନିର୍ଣ୍ଣାୟକ । ପରିବେଶ ପରିବର୍ତ୍ତନ, ଜଙ୍ଗଲ କ୍ଷୟ, ଜୈବ ବିଭିନ୍ନତାର ବିପର୍ଯ୍ୟୟ ଇତ୍ୟାଦି ଯୋଗୁ ମଣିଷ ସଭ୍ୟତା ଉପରେ ବିପଦ ମାଡି ଆସୁଥିବା ବେଳେ ବ୍ୟାପକ ଜଳାଭାବ ସଭ୍ୟତା ପାଇଁ ଏକ ଚରମ ସଙ୍କଟର କାରଣ ହୋଇଛି । ଜଳର ପରିଚାଳନା ଗତ ତ୍ରୁଟି ଓ ମୁନାଫା ଅର୍ଜନର ଲୋଭ ଶେଷରେ ଜଳକୁ ଏକ ଲାଭଜନକ ଦ୍ରବ୍ୟରେ ପରିଣତ କରିଛି ।

ମାନବାଧିକାର ସଂକ୍ରାନ୍ତ ଘୋଷଣାନାମାର ଧାରା ୩ ଅନୁସାରେ ଜଳର ଅଧିକାରକୁ ପ୍ରମୁଖ ସ୍ଥାନ ଦିଆଯାଉଛି ଏବଂ ଧାରା ୧୧ ଓ ୧୨ ଜଳର ଅଧିକାରର ଆଇନଗତ ଦିଗକୁ ଉନ୍ମୋଚନ କରୁଛି ।

ଜନସଂଖ୍ୟାର ଆଶ୍ଚର୍ଯ୍ୟଜନକ ବୃଦ୍ଧି ସତ୍ତ୍ୱେ ଜଳର ଅଧିକାର ଯେ କ୍ଷୁର୍ଣ୍ଣ ହେବ- ଏହା କରିବା ଅନୁଚିତ । କାରଣ ପ୍ରକୃତିର ନୈସର୍ଗିକ ସଂପଦ ଜଳର ଗଚ୍ଛିତ ପରିମାଣ ଅନୁସାରେ ମନୁଷ୍ୟର ସଂଖ୍ୟା ଯଥେଷ୍ଟ କମ୍ । ତଥାପି ପୁଞ୍ଜିବାଦୀ ପ୍ରକ୍ରିୟା ମଧ୍ୟରେ ଜଳର ମାଲିକାନାକୁ ଘରୋଇ କମ୍ପାନୀମାନେ ସାବ୍ୟସ୍ତ କରୁଥିବାରୁ ଜଳ ଉପରେ ମଣିଷର ଅଧିକାର କ୍ଷୁର୍ଣ୍ଣ ହେଉଛି ।

୧୯୯୨ ଜାନୁଆରୀରେ ଆୟାରଲ୍ୟାଣ୍ଡ ରାଜଧାନୀ ଡବ୍‌ଲିନ୍‌ର ଅନୁଷ୍ଠିତ ଜଳ ଓ ପରିବେଶ ସମ୍ମିଳନୀରେ ଜଳର ଅଧିକାର ନେଇ ଏକ ଘୋଷଣାନାମା ପ୍ରକାଶ ପାଇଥିଲା । ଏଥିରେ ଜଳ ଉପରେ ସମସ୍ତଙ୍କ ସମାନ ଅଧିକାରକୁ ଚିଠା ପ୍ରସ୍ତାବରେ ଗୃହୀତ କରାଯାଇଥିବା ବେଳେ ଜଳ ପରିଚାଳନା ଉପରେ ଗୁରୁତ୍ୱ ଦିଆଯାଇଥିଲା । ଜଳ

ଉପରେ ଯେପରି ସମସ୍ତ ନାଗରିକ ସମାନ ଅଧିକାର ଜାହିର କରିପାରିବେ ସେଥିପାଇଁ ନୀତି ନିୟମ ଲାଗୁ କରିବାକୁ ପ୍ରତ୍ୟେକ ରାଷ୍ଟ୍ରକୁ ଡ଼ବଲିନ୍ ସମ୍ମିଳନୀ ଆହ୍ୱାନ କରିଥିଲା ।

ଅପରପକ୍ଷେ ବହୁରାଷ୍ଟ୍ରୀୟ ପୁଞ୍ଜିପତିଙ୍କ ଶୋଷଣ ବଳୟରେ ଅହରହ ଦଗ୍ଧୀଭୂତ ହେଉଥିବା ଗରୀବ ଶ୍ରେଣୀ ଅଧିକାଂଶ ସମୟରେ ଜଳର ଅଧିକାରରୁ ବଞ୍ଚିତ ହୋଇଛନ୍ତି । ଏମାନଙ୍କ ପାଇଁ ଆନ୍ତର୍ଜାତିକ ନୀତି ନିୟମ ନୀରବ ଥାଏ । ଜଳର ଘରୋଇକରଣ ଦ୍ୱାରା ନିର୍ଦ୍ଦିଷ୍ଟ ପୁଞ୍ଜିପତି ଧନଶାଳୀ ହେଉଥିବା ବେଳେ ଜଳର ଅଧିକାରରୁ ବଞ୍ଚିତ ହୋଇଥାନ୍ତି ଅଧିକାଂଶ ନାଗରିକ ।

ବହୁରାଷ୍ଟ୍ରୀୟ କମ୍ପାନୀଗୁଡ଼ିକର ନୈତିକତା ହେଲା ସର୍ବତ୍ର ମାନବାଧିକାର ଉଲ୍ଲଂଘନ କରି ପୁଞ୍ଜି ଆୟର ପଥକୁ ସୁଗମ କରିବା ଏବଂ ପୁଞ୍ଜି ପ୍ରବାହ କ୍ଷେତ୍ରରେ ରହିଥିବା କଟକଣା ପ୍ରତ୍ୟାହାର କରିବା । ଗୋଟିଏ ଦେଶ ଉପରେ ଆକ୍ରମଣ କରି ସେହି ଦେଶର ଜଳ ସଂଯୋଗ ପ୍ରଣାଳୀ ଉପରେ ଆକ୍ରମଣ କରିବା ମଧ୍ୟ ଏକ ମାନବାଧିକାର ଉଲ୍ଲଂଘନ । ସମସ୍ତଙ୍କୁ ଜଳ ଯେପରି ମିଳିପାରିବ ସେଥିପାଇଁ ଏହାକୁ ଏକ ରାଜନୈତିକ ଆନ୍ଦୋଳନରେ ପରିଣତ କରିବାର ସମୟ ଆସି ପହଞ୍ଚିଛି ।



# ସୁଏଜ୍, ଭିଭେଣ୍ଡି ଓ ଏନ୍‌ରନ୍‌ର ସାମ୍ରାଜ୍ୟ

ପୃଥିବୀର ଦୁଇଟି ପ୍ରମୁଖ ଜଳ ସମ୍ରାଟ ସୁଏଜ୍ (Suez) ଓ ଭିଭେଣ୍ଡି(Vivendi)ର ସାମ୍ରାଜ୍ୟ ଦିନକୁ ଦିନ ପୃଥିବୀର ବ୍ୟାପ୍ତ ହେବାରେ ଲାଗିଛି । ପୃଥିବୀର ପ୍ରଥମ କମ୍ପାନୀ ଭାବେ ଖ୍ୟାତି ଅର୍ଜନ କରିଥିବା ସୁଏଜ୍ କମ୍ପାନୀ ଭାରତ ସମେତ ୧୩୦ରୁ ଅଧିକ ରାଷ୍ଟ୍ରରେ ପ୍ରବେଶ କରିଥିବା ବେଳେ ଭିଭେଣ୍ଡି ମଧ୍ୟ ପଛାଇ ଯାଇନାହିଁ । ଅକ୍ଟୋପସ୍ ପରି ନିଜ ହସ୍ତ ପ୍ରସାର କରିଥିବା ଭିଭେଣ୍ଡି ବିଭିନ୍ନ କ୍ଷେତ୍ରରେ ନିଜର ପୁଞ୍ଜି ବିନିଯୋଗ କରିଛି । ସେଥିରୁ ଅନ୍ୟକ୍ଷେତ୍ର ହେଉଛି ଶକ୍ତି, ଜଳ, ପରିବହନ ଓ ବର୍ଜ୍ୟ ବସ୍ତୁ ପରିଚାଳନା । ବାର୍ଷିକ ପ୍ରାୟ ୪୫ଶହ କୋଟି ଡଲାର ବ୍ୟବସାୟ କରୁଥିବା ଭିଭେଣ୍ଡି ମଧ୍ୟ ଏକ ପ୍ରସିଦ୍ଧ ମିଡିଆ କମ୍ପାନୀ ଭାବେ ପରିଗଣିତ ହୋଇଛି ।

ଏସିଆ ମହାଦେଶର ତିଆନ ଜିନ (ଚାଇନା), ଇଞ୍ଚନ (ଦକ୍ଷିଣ କୋରିଆ), କୋଲକାତା (ଭାରତ), ଟାଂଗରିସ (ମରକ୍କୋ), ବେରୁଟ (ଲେବାନନ), ପ୍ରାଗ୍ (ଚେକ୍), ସିଜେଦ (ହଂଗେରୀ), ଆଫ୍ରିକୀୟ ରାଷ୍ଟ୍ର ନାଇଜେରିଆ, କେନିଆ, କଂଗୋ, ଚାଦ, ଜାଇରେ, ଜିବୁତି, ଲାଟିନ ଆମେରିକାର ମଣ୍ଟେରିଆ ପ୍ରଭୃତିରେ ନିଜର ବ୍ୟାବସାୟିକ ପରିସୀମା ବୃଦ୍ଧି କରିଛି । ଆମେରିକୀୟ ଜଳ କମ୍ପାନୀ ୟୁଏସ ଫିଲଟର ଠାରୁ ୧୪ଗୁଣ ବୃହତ ଭିଭେଣ୍ଡି ଆମେରିକାରେ ମଧ୍ୟ ଏକ ପ୍ରମୁଖ ଜଳ ବଣ୍ଟନକାରୀ ସଂସ୍ଥାର ମାନ୍ୟତା ପାଇଛି । ବିଶ୍ୱବ୍ୟାଙ୍କ ଓ ଆନ୍ତର୍ଜାତିକ ମୁଦ୍ରାପାଣ୍ଠି ନିକଟରେ ଯଥେଷ୍ଟ ପ୍ରଭାବ ବିସ୍ତାର କରିଥିବା ଭିଭେଣ୍ଡିକୁ ପୃଥିବୀରେ ଚ୍ୟାଲେଞ୍ଜ କରିବା ଏକ ଦୁରୂହ ବ୍ୟାପାର ହୋଇଛି ।

ଫ୍ରାନ୍‌ସର ଏହି ଦୁଇ ପ୍ରସିଦ୍ଧ କମ୍ପାନୀ ବିଶ୍ୱରେ ଜଳ ଯୋଗାଣର ୭୦ଭାଗ ଅଧିକାର କରିଥିବା ବେଳେ ଅନ୍ୟ ଯେଉଁ କମ୍ପାନୀ ଏ କ୍ଷେତ୍ରରେ ଆଗକୁ ଆସୁଛି ତାହା ହେଲା ଏନରନ । ବିଶ୍ୱସ୍ତରୀୟ ଏନରନ କମ୍ପାନୀର ପ୍ରାଥମିକ ବ୍ୟବସାୟ ହେଉଛି ଶକ୍ତିର ବ୍ୟବସାୟ । ମାତ୍ର ମହାରାଷ୍ଟ୍ରରେ ଏହି କମ୍ପାନୀର ଦାରୁଣ ବିପର୍ଯ୍ୟୟ ପରି ପୃଥିବୀର

ଅନ୍ୟାନ୍ୟ ରାଷ୍ଟ୍ରରେ ଏହି କମ୍ପାନୀ କ୍ଷତି ସହିବା ପରେ ଶେଷରେ ଏହି କମ୍ପାନୀ ଜଳ ବ୍ୟବସାୟ ପରି ଏକ ରିସ୍କବିହୀନ ବ୍ୟବସାୟକୁ ଆବୋରି ନେଇଛି । କେବଳ ୨୦୦୦ରେ ଏନ୍‌ରନ୍ କମ୍ପାନୀର ଲାଭ ପରିମାଣ ୧୫୧% ବୃଦ୍ଧି ପାଇଥିଲା । ସେହିବର୍ଷ କମ୍ପାନୀ ଲାଭ କରିଥିଲା ୧୦୦ ବିଲିୟନ ଡଲାର ।

୧୯୯୮ରେ ଏନ୍‌ରନ୍ ବ୍ରିଟେନର ଜଳ କମ୍ପାନୀ ଓ୍ୱେସ୍‌କସ୍ ଓ୍ୱାଟର (Wessex Water) କୁ କ୍ରୟ କରିଥିଲା ଏବଂ ପରେ ଏନ୍‌ରନ୍ ଅଜରିକ୍ସ (Azurix) ନାମରେ ଜଳ କମ୍ପାନୀ ଗଠନ କରିଥିଲା । ଅଜରିକ୍ସ କ୍ରମଶଃ ଭାରତ ସମେତ ଆର୍ଜେଣ୍ଟିନା, ବଲିଭିଆ, ମେକ୍‌ସିକୋ ଓ କାନାଡ଼ାରେ ଜଳ ବ୍ୟବସାୟ କରିଥିଲା ।

ଆମେରିକା, ଭାରତ, ଜର୍ମାନୀର ରାଜନୀତିରେ ଏନ୍‌ରନ୍ କମ୍ପାନୀ ଅଗାଧ ପ୍ରବେଶ କରିଛି । ଆମେରିକାର ପୂର୍ବତନ ରାଷ୍ଟ୍ରପତି ଜର୍ଜ ବୁଶ ଓ ବିଲ କ୍ଲିଣ୍ଟନଙ୍କ ନିକଟରେ ଏନରନ କର୍ମକର୍ତ୍ତାଙ୍କ ଅବାଧ ପ୍ରବେଶ ଥିଲା । ଜର୍ଜ ବୁଶଙ୍କ ପୁତ୍ର ଜର୍ଜ ଡବ୍ଲୁ ବୁଶ୍‌ଙ୍କୁ ରାଷ୍ଟ୍ରପତି ନିର୍ବାଚନ ସମୟରେ ଏନ୍‌ରନ୍ କମ୍ପାନୀ ପ୍ରଚୁର ଅର୍ଥ ମଧ୍ୟ ନିର୍ବାଚନ ପାଣ୍ଠିକୁ ପ୍ରଦାନ କରିଥିଲା । ଏନ୍‌ରନ୍ କମ୍ପାନୀର ସିଇଓ କେନେଥ ଲେଙ୍କୁ ଏକ ଉଚ୍ଚପଦବୀରେ ଅବସ୍ଥାନ କରାଯାଇଥିଲା ଏବଂ ବୁଶଙ୍କ ନିର୍ବାଚନ ପରିଚାଳନା ପାଣ୍ଠିକୁ କେନେଥ ଲେ ବ୍ୟକ୍ତିଗତ ଭାବେ ଏକ ଲକ୍ଷ ଡ଼ଲାର ସହାୟତା ପ୍ରଦାନ କରିଥିଲେ । ଏହା ଛଡା ସେ ବୁଶଙ୍କ ଶକ୍ତି ପରାମର୍ଶଦାତା କମିଟିରେ ସଦସ୍ୟ ହେବା ସହ ଉପରାଷ୍ଟ୍ରପତି ଡିକ୍ ଚେନିଙ୍କ ଅନେକ ବ୍ୟାବସାୟିକ ସାମ୍ରାଜ୍ୟ ସହ ଜଡିତ ଥିଲେ ।

ବ୍ରିଟେନରେ ଜଳ ବଣ୍ଟନ ଦାୟିତ୍ୱ ନେଇଥିବା ଅଜରିକ୍ସର ପରିଚାଳନାଗତ ତ୍ରୁଟି ଯୋଗୁ ଦିନେ ଜଳ ଦର ୫ଗୁଣ ବୃଦ୍ଧି ପାଇଥିଲା । କ୍ରମେ ଅଜରିକ୍ସ ଷ୍ଟକ୍ ବଜାରରେ ଯଥେଷ୍ଟ କ୍ଷତିର ସମ୍ମୁଖୀନ ହୋଇଥିଲା । ବୁଏନସ୍ ଏରେସରେ ମଧ୍ୟ ଜଳ ବଣ୍ଟନ ଦାୟିତ୍ୱ ନେଇଥିବା ଅଜରିକ୍ସ ବିରୋଧରେ ବ୍ୟାପକ ଜନ ମତ ସୃଷ୍ଟି ହୋଇଥିଲା କାରଣ ଏହି କମ୍ପାନୀ ବ୍ୟାପକ ପରିମାଣ ପ୍ରଦୂଷିତ ଜଳ ନିୟମିତ ବଣ୍ଟନ କଲା । ଏପରି ପରସ୍ଥିତିରେ ଏନ୍‌ରନ୍ ବାଧ୍ୟ ହୋଇ ଅଜରିକ୍ସକୁ ଭାଙ୍ଗି ଦେଲା ଏବଂ ଏହାର ଯନ୍ତ୍ରପାତି ବିକ୍ରି କରିଦେଲା । ଅଜରିକ୍ସ ଠାରୁ ତିକ୍ତ ଅନୁଭୂତି ଲାଭ କରି ଏନ୍‌ରନ୍ ଅଧିକ ସତର୍କ ହୋଇ ମନ୍ଥର ଉପାୟରେ ଜଳ ବ୍ୟବସାୟ ଉପରେ ଦୃଷ୍ଟି ନିବଦ୍ଧ କରିଛି ।



# ଜଳ-ପୁଞ୍ଜିପତିଙ୍କ କବଳରେ ପୃଥିବୀ

ଜଗତୀକରଣ ଅର୍ଥନୀତି ଓ ଗ୍ଲୋବାଲ୍ ଭିଲେଜ୍ (ବିଶ୍ୱ ଗ୍ରାମ) ନାମରେ ସାମ୍ରାଜ୍ୟବାଦୀ ଶକ୍ତିଙ୍କ ପ୍ରଭାବରେ ବିଭିନ୍ନ ରାଷ୍ଟ୍ର ନିଜ ଅର୍ଥନୀତିକୁ ମୁକ୍ତ କରିବା ପରେ ବହୁ ରାଷ୍ଟ୍ରୀୟ ପୁଞ୍ଜିପତିଙ୍କ ନିମନ୍ତେ ସୁଯୋଗ ବହୁଗୁଣ ବୃଦ୍ଧି ପାଇଥିଲା । ମନସାଣ୍ଟୋ ଓ ନୋଭାରଟିସ ପରି ଆନ୍ତର୍ଜାତିକ ବୀଜ କମ୍ପାନୀଗୁଡିକ ପୃଥିବୀର ବ୍ୟବସାୟ ପରିସୀମା ବୃଦ୍ଧି କରିବା ପାଇଁ ଆଗେଇ ଆସିବା ପରି ସେଲ୍, ଏସ୍‌କନ, କାଷ୍ଟ୍ରୋଲ ପରି ଆନ୍ତର୍ଜାତିକ ତୈଳ କମ୍ପାନୀ ମଧ୍ୟ ତତ୍‌କ୍ଷଣାତ ବିଶ୍ୱ ବଜାରରେ ଆଧିପତ୍ୟ ବିସ୍ତାର କଲେ । ତିଳେ ମାତ୍ର ନ ପଛାଇ ଆନ୍ତର୍ଜାତିକ ଭାବେ ପରିଗଣିତ ଅନେକ ଜଳ କମ୍ପାନୀ ମଧ୍ୟ ପୃଥିବୀରେ ନିଜ ବ୍ୟବସାୟ ପାଇଁ ପକ୍ଷ ବିସ୍ତାର କଲେ । ଏହି କମ୍ପାନୀଗୁଡିକ ମଧ୍ୟରେ ପ୍ରମୁଖ ଥିଲେ ସୁଏଜ, ଭିଭେଣ୍ଡି, ଆମେରିକାନ ଓ୍ୱାଟର କମ୍ପାନୀ, ସେଭେନ-ଟ୍ରେଣ୍ଟ, କେରଡ଼ା ଗ୍ରୁପ୍, ଆଂଗ୍ଲିଆନ ଓ୍ୱାଟର, ଏନ୍‌ରନ୍-ଅଜରିକ୍ସ, ବେଚେଲ୍- ୟୁନାଇଟେଡ଼ ୟୁଟିଲିଟସ, ବାୟୋଗସ-ସଉର, ଆରଡ଼ବ୍ଲ୍ୟୁଇ-ଥେମ୍‌ସ୍ ଇତ୍ୟାଦି କମ୍ପାନୀ ।

ଆର୍ଜେଣ୍ଟିନା ରାଜଧାନୀ ବୁଏନ୍‌ସ୍ ଏରେସରେ ଜଳର ଘରୋଇକରଣ କଥା ପ୍ରଥମେ ବିଚାରକୁ ନିଆଯାଉ । ଅଗଷ୍ଟ ୧୯୮୯ରେ ଆର୍ଜେଣ୍ଟିନା ରାଷ୍ଟ୍ରପତି କାର୍ଲୋସ ମେନେମ ରାଷ୍ଟ୍ରୀୟ ସଂପଦ, ନିଗମ ଓ କମ୍ପାନୀର ଘରୋଇକରଣ ନିମନ୍ତେ ଏକ ଆଦେଶ ଜାରି କରିଥିଲେ । ଏହାରି ସୁଯୋଗରେ ସୁଏଜ ଓ ଭିଭେଣ୍ଡି ଆନ୍ତର୍ଜାତିକ ଜଳ କମ୍ପାନୀ ରାଜଧାନୀ ବୁନୋସ ଏରେସରେ ଜଳ ବିତରଣ କରିବା ପାଇଁ ଅନୁମତି ପାଇଥିଲେ । ପ୍ରଥମ କିଛି ବର୍ଷ ଜଳ ବିତରଣ ସୁଯୋଗ ଆରାମଦାୟକ ଥିଲା ମାତ୍ର ପରେ ପରେ ଏହି ସମସ୍ୟା ଅତି ଉତ୍କଟ ଆକାର ଧାରଣ କରିଥିଲା । ଅବହେଳା ସ୍ୱରୂପ ବୁଏନ୍‌ସ୍ ଏରେସ କର୍ତ୍ତୃପକ୍ଷ ଜଳର ଘରୋଇକରଣ ପରେ ସରକାରୀ ଦାୟିତ୍ୱକୁ ଭୂଲି ଯାଇଥିଲେ । ଫଳରେ ଏହି ଦୁଇ ଘରୋଇ କମ୍ପାନୀର ମନୋମୁଖୀ ନୀତି ନିୟମ ଯୋଗୁ ସହରବାସୀ ଜଳ ପାଇବାରୁ ବଞ୍ଚିତ ହୋଇଥିଲେ । ଅନ୍ୟ ଏକ ସର୍ଭେରୁ ଜଣାଯାଇଥିଲା ଯେ ଏହି ଦୁଇ କମ୍ପାନୀର ଲାଭର ପରିମାଣ ୪୭% ବୃଦ୍ଧି ପାଇଥିଲା ।

ଜଳ ପରି ଏକ ଆଖିଦୃଶିଆ ବ୍ୟବସାୟ କରିବାକୁ ଆନ୍ତର୍ଜାତିକ ପୁଞ୍ଜିପତିର ପୁଞ୍ଜି ଜ୍ୱାଳାରେ କୋଟି କୋଟି ନାଗରିକଙ୍କ ତୃଷ୍ଣା ମରିଚୀକାରେ ପରିଣତ ହେବାରେ ଲାଗିଛି । ପୃଥିବୀରେ ସଂପ୍ରତି ବାର୍ଷିକ ତିନି ଟ୍ରିଲିୟନ ଡଲାର ମୂଲ୍ୟର ଜଳ ବ୍ୟବସାୟ ହେଉଛି । ଜଳ ଶିଳ୍ପରୁ ମିଳୁଥିବା ରାଜସ୍ୱ ପରିମାଣ ତୈଳ ବ୍ୟବସାୟ ରାଜସ୍ୱ ପରିମାଣର ୪୦% ଏବଂ ଫାର୍ମାସ୍ୟୁଟିକାଲ କ୍ଷେତ୍ରର ଏକ ତୃତୀୟାଂଶ । ଏଥିପାଇଁ ସାଧାରଣତଃ ଜଳ ବ୍ୟବସାୟ ପ୍ରତି ଆନ୍ତର୍ଜାତିକ କମ୍ପାନୀମାନେ ଆଗ୍ରହ କରିଥାନ୍ତି । ଥରେ କୌଣସି ଗୋଟିଏ ରାଷ୍ଟ୍ରରେ ପ୍ରବେଶ କରାଗଲେ ସେମାନଙ୍କୁ ବାହାର କରିବା ଏକରକମ ଅସମ୍ଭବ ହୋଇପଡୁଛି ।

ସଂପ୍ରତି ପୃଥିବୀର ପ୍ରାୟ ୧୦ପ୍ରତିଶତ ଲୋକ ବହୁରାଷ୍ଟ୍ରୀୟ ପୁଞ୍ଜିପତିଙ୍କ ଦୟାରୁ ପାଣି ପାଉଥିବା ବେଳେ ୩୦ପ୍ରତିଶତ ଲୋକେ ବିଷାକ୍ତ ଓ ରାସାୟନିକ ପଦାର୍ଥ ଯୁକ୍ତ ପାନୀୟ ଜଳ ପିଇବାକୁ ବାଧ ହେଉଛନ୍ତି । ୨୫ପ୍ରତିଶତ ଲୋକଙ୍କୁ ବାଧ କରାଯାଉଛି ସୀମିତ ଜଳ ବ୍ୟବହାର କରିବା ପାଇଁ । ଅପରପକ୍ଷେ ମାତ୍ର ୦.୦୫ ପ୍ରତିଶତ ବହୁରାଷ୍ଟ୍ରୀୟ କମ୍ପାନୀ ସମଗ୍ର ବିଶୁଦ୍ଧ ଜଳ ପରିମାଣର ୩୫ପ୍ରତିଶତ ଉପଭୋଗ କରୁଛନ୍ତି ।

ଷ୍ଟକ୍ ବଜାରରେ ମଧ୍ୟ ଅନେକ ଜଳ କମ୍ପାନୀଙ୍କ ସେୟାର ଯଥେଷ୍ଟ ବୃଦ୍ଧି ପାଉଛି । ରାତାରାତି କୋଟି କୋଟି ଟଙ୍କା ଅର୍ଜନ କରିବାର ସୁଗମ୍ୟ ପନ୍ଥା ଅବଲମ୍ବନ କରିଥିବା ବହୁରାଷ୍ଟ୍ରୀୟ କମ୍ପାନୀଗୁଡିକର ସେୟାର ବଜାର ମଧ୍ୟ ରକେଟ ସଦୃଶ ବୃଦ୍ଧି ପାଉଛି । ଗତ ୨୦୦୨ରେ ଆମେରିକା ଷ୍ଟକ ବଜାରରେ ଆମେରିକୀୟ ଜଳ କମ୍ପାନୀଗୁଡିକର ସେୟାର ପରିମାଣ ଆକସ୍ମିକ ଭାବେ ୧୫୦୦ କୋଟି ଡ଼ଲାରକୁ ବୃଦ୍ଧି ପାଇଥିଲା । ସେହିପରି ଅଜରିକ୍ସ କମ୍ପାନୀର ସେୟାର ମଧ୍ୟ ପୃଥିବୀର ବିଭିନ୍ନ ଦେଶରେ ବୃଦ୍ଧି ପାଇଛି ।

ସମ୍ରାଟ ନେପୋଲିୟନ- ୩ୟଙ୍କ ଶାସନ ସମୟରେ ଉନ୍ନବିଂଶ ଶତାବ୍ଦୀର ମଧ୍ୟ ପର୍ଯ୍ୟାୟରେ ଜଳର ଘରୋଇକରଣ ପ୍ରକ୍ରିୟାରୁ ଲାଭବାନ ହୋଇଥିବା ଭିଭେଣ୍ଡି ଓ ସୁଏଜ ଫ୍ରାନସର ଅଗାଧ ବିସ୍ତାର ଲାଭ କରିଥିଲେ ଏବଂ ଫ୍ରାନସରୁ ହିଁ ଆରମ୍ଭ ହୋଇଥିଲା ଏହି ଦୁଇ ଜଳ କମ୍ପାନୀର ବିଶ୍ୱ ବିଜୟ ଅଭିଯାନ । ସୁଏଜ୍ କମ୍ପାନୀ ପୃଥିବୀର ୧୩୦ଟି ଓ ଭିଭେଣ୍ଡି କମ୍ପାନୀ ପ୍ରାୟ ୧୦୦ଟି ରାଷ୍ଟ୍ରରେ ସଂପ୍ରତି ଜଳ ବ୍ୟବସାୟ କରୁଛନ୍ତି । ୧୯୯୦ ମଧ୍ୟ ଭାଗରେ ହୁଏତ ସୁଏଜ କମ୍ପାନୀ ପୃଥିବୀର ବୃହତ୍ ୨୦ଟି ସହରରେ ଜଳ ବଣ୍ଟନ ଦାୟିତ୍ୱ ନେଇଥିବା ବେଳେ ଭିଭେଣ୍ଡି ୩୦ଟି ସହରରେ ଦାୟିତ୍ୱ ନେଇଛି । ଏହି

ଦୁଇଟି କମ୍ପାନୀ ବ୍ୟତୀତ ଫ୍ରାନସର ବାୟୋଗସ କମ୍ପାନୀ ମଧ୍ୟ ୮୦ଟି ରାଷ୍ଟ୍ରରେ ପ୍ରବେଶ କରିଛି । ଏହି କମ୍ପାନୀ ନିଜର ଅନ୍ୟ ଏକ ସହଯୋଗୀ 'ସଉର୍' ସହ ମିଶି ଏହି ବ୍ୟବସାୟ ପରିଚାଳନା କରୁଛି । ଜର୍ମାନୀର ଇଲେକଟ୍ରିକ କମ୍ପାନୀ ଆର ଡ୍‌ବ୍ଲ୍ୟୁଇ ଥେମସ ୱାଟର କମ୍ପାନୀକୁ କ୍ରୟ କରି ସୁଏଜ ସହ ସମାନ ସ୍ଥାନ ହାସଲ କରିଛି । ଆମେରିକୀୟ ଜଳ କମ୍ପାନୀ ବେଚେଲ ଓ ବ୍ରିଟେନର ଜଳ କମ୍ପାନୀ ୟୁନାଇଟେଡ୍ ୟୁଟିଲିଟିଜ୍ ପ୍ରାୟ ୪ କୋଟି ଲୋକଙ୍କୁ ଜଳ ଦେବାରେ ଭୂମିକା ଗ୍ରହଣ କରିଛନ୍ତି । ସେହିପରି ଏନରନ ଓ ଅଜରିକ୍ସ ମଧ୍ୟ ନିଜ ଆସ୍ଥାନ ଅନେକ ଦେଶରେ କ୍ରମାଗତ ବୃଦ୍ଧି କରୁଛନ୍ତି ।

୧୯୮୦ରେ ମାର୍ଗାରେଟ ଥାଚରଙ୍କ ସମୟରେ ଜଳର ଘରୋଇକରଣ ପରେ ବ୍ରିଟେନ୍‌ର ଅନେକ ବିଶ୍ୱସ୍ତରୀୟ ଜଳ କମ୍ପାନୀ ମୁଣ୍ଡ ଟେକିଥିଲେ । ଏହିଗୁଡ଼ିକ ମଧ୍ୟରେ ରହିଛନ୍ତି ସେଭେନ-ଟ୍ରେଣ୍ଟ, ଆଂଗଲିକାନ ୱାଟର, କେଲଡ଼ା ଗ୍ରୁପ ଇତ୍ୟାଦି । ଥେମ୍‌ସ୍ ୱାଟର ଓ ୟୁନାଇଟେଡ଼ ୟୁଟିଲିଟିଜ୍ କମ୍ପାନୀ ବ୍ରିଟେନ ଜଳ ବଜାରରେ ଯଥେଷ୍ଟ ଅଧିକ ପ୍ରଭାବ ପକାଇଛନ୍ତି । ମେକ୍‌ସିକୋ, ବ୍ରାଜିଲ ଓ ବ୍ରିଟେନରେ ଏନ୍‌ରନ୍ କମ୍ପାନୀର ପ୍ରଚୁର ଜଳ ଯୋଗାଣ ସାମଗ୍ରୀ ଓ ଯନ୍ତ୍ରପାତି ଗଚ୍ଛିତ ରହିଥିବା ବେଳେ ସୁଏଜ ଓ ଭିଭେଣ୍ଡିର ପ୍ରାୟ ୧୫ଟି ଦେଶରେ ପ୍ରଚୁର ସାମଗ୍ରୀ ଗଚ୍ଛିତ ରହିଛି ଏବଂ ଏହି କମ୍ପାନୀଗୁଡ଼ିକ ସେହି ଦେଶଗୁଡ଼ିକରେ ଜଳବଣ୍ଟନ ସୁଯୋଗ ପାଇବାକୁ ଲକ୍ଷ୍ୟ ରଖିଛନ୍ତି । ଥେମସ ୱାଟରକୁ କ୍ରୟ କରିବା ପରେ ଆରଡ଼୍‌ବ୍ଲ୍ୟୁଇ କମ୍ପାନୀ ଅଷ୍ଟ୍ରେଲିଆ ଓ ଜର୍ମାନୀର ନିଜର ବ୍ୟାବସାୟିକ ସାମ୍ରାଜ୍ୟ ବିସ୍ତାର କରିଥିବା ବେଳେ ଏସିଆ, ମଧ୍ୟ ପ୍ରାଚ୍ୟ, ଲାଟିନ ଆମେରିକା ଓ ପୂର୍ବ ୟୁରୋପରେ ନିଜର ସାମ୍ରାଜ୍ୟ ବିସ୍ତାର କରିଛି । କେଲଡ଼ା ଗ୍ରୁପ ଚାଇନା, ବ୍ରିଟେନ, କାନାଡ଼ା ଓ ନେଦରଲ୍ୟାଣ୍ଡରେ ଜଳ ବଣ୍ଟନ ଦାୟିତ୍ୱ ନେଇଥିବା ବେଳେ ଆଂଗ୍ଲିକାନ୍ ୱାଟର ୫ଟି ଉପମହାଦେଶରେ ପ୍ରାୟ ୨କୋଟି ଲୋକଙ୍କୁ ଜଳ ବଣ୍ଟନ ଦାୟିତ୍ୱ ଦେଇଛି ।

ଗୋଟିଏ ଗୋଟିଏ ବୃହତ୍ ଜଳଚୁକ୍ତି କରିବା ପାଇଁ ସାଧାରଣ କ୍ଷେତ୍ର ପରି ଜଳ କମ୍ପାନୀ ମଧ୍ୟ ହାତ ମିଳାଇଥାନ୍ତି ଏବଂ ମିଳିତ ପୁଞ୍ଜି ବିନିଯୋଗ କରିଥାନ୍ତି । ଉଦାହରଣ ସ୍ୱରୂପ ୧୯୯୯ରେ ବର୍ଲିନରେ ଜଳ ବଣ୍ଟନ କରିବା ପାଇଁ ଭିଭେଣ୍ଡି ଓ ଆରଡ଼୍‌ବ୍ଲ୍ୟୁଇ ପରସ୍ପର ହାତ ମିଳାଇଥିଲେ ଯାହାକି ଏକ ବୃହତ୍ ଘରୋଇକ୍ଷେତ୍ରରେ ପରିଣତ ହୋଇଥିଲା । ଆଶ୍ଚର୍ଯ୍ୟର କଥା ଯେଉଁଠି ଘରୋଇ ଜଳ କମ୍ପାନୀଗୁଡ଼ିକର ଜଳ ବଣ୍ଟନ ଦାୟିତ୍ୱ ଦିଆଯାଉଛି ସେଠାରେ ଜଳର ମାନ ଯଥେଷ୍ଟ ହ୍ରାସ ଘଟୁଛି ଏବଂ ବେଳେ ବେଳେ ସାଧାରଣ ଜଳଠାରୁ ନିମ୍ନମାନର ଜଳ ଯୋଗାଣ ହେଉଛି ।

ଉନ୍ନବିଂଶ ଶତାବ୍ଦୀରେ ପ୍ରସିଦ୍ଧ ସୁଏଜ୍ କେନାଲ ଖୋଲିବା ପାଇଁ ଦାୟିତ୍ୱ ନେଇଥିବା ସୁଏଜ୍ କମ୍ପାନୀର ମାଲିକ ଫର୍ଡିନାଣ୍ଡ ଡ଼ି ଲିସ୍‌ପସଙ୍କ ମୁଣ୍ଡରେ ପ୍ରଥମେ ଜଳ ବିତରଣ ଚିନ୍ତା ପ୍ରଥମେ ମୁଣ୍ଡରେ ପଶିଥିଲା । ମାର୍ଚ୍ଚ ୨୦୦୧ରେ ସୁଏଜ୍-ଲିନୋସ ଡ଼େସ ଏକ୍‌ସର ନାମ ପରିବର୍ତ୍ତନ କରାଯାଇ କେବଳ ସୁଏଜ୍ ରଖାଗଲା ଏବଂ ଆନ୍ତର୍ଜାତିକ ସ୍ତରରେ ଏହାକୁ ନୂଆରୂପ ଦିଆଗଲା । ଏହି ବୃହତ କମ୍ପାନୀ କେବଳ ଜଳ ବ୍ୟବସାୟ ନକରି ଶକ୍ତି, ବର୍ଜ୍ୟବସ୍ତୁ ପରିଚାଳନା ଇତ୍ୟାଦି ବ୍ୟବସାୟ ମଧ୍ୟ କରିଥାଏ । କେବଳ ଫ୍ରାନସ ଓ ବେଲଜିୟମରୁ ଏହି କମ୍ପାନୀର ରାଜସ୍ୱ ପ୍ରାୟ ୬୦ପ୍ରତିଶତ ଆୟ ହୋଇଥିବା ବେଳେ ଜଳ ସେବାରୁ ରାଜସ୍ୱ ଆସିଥାଏ ୨୪.୨ ପ୍ରତିଶତ । ଯୋଗାଯୋଗ ସେବାରୁ ଏହାର ରାଜସ୍ୱ ପ୍ରାୟ ୨ ପ୍ରତିଶତ ହୋଇଥାଏ । କେବଳ ଜଳ ବ୍ୟବସାୟରୁ ୨୦୦୦ରେ ସୁଏଜ୍‌ର ଲାଭ ପରିମାଣ ଅକସ୍ମାତ ୪୦% ବୃଦ୍ଧି ପାଇବାରୁ ସୁଏଜ୍ ଜଳ ବ୍ୟବସାୟ ପ୍ରତି ଅଧିକ ଗୁରୁତ୍ୱ ଦେଲା ଏବଂ ଓଣ୍ଡିଓ(ONDEO) ନାମରେ ଜଳ ବ୍ୟବସାୟ ଆରମ୍ଭ କଲା । ଏହାର ତିନୋଟି ଶାଖା ଖୋଲାଯାଇ ଜଳ ଯୋଗାଣ ଓ ପରିମଳ, ଜଳ ବିଶୋଧନ ଓ ଜଳ ଇଂଜିନିୟରିଂ ଉପରେ ତିନୋଟି ଯାକ ଶାଖାକୁ ଦାୟିତ୍ୱ ଦିଆଗଲା । ଏକ ଶକ୍ତିଶାଳୀ କମ୍ପାନୀ ଭାବେ ପରିଗଣିତ ସୁଏଜ୍ ଆମେରିକା, ଲାଟିନ ଆମେରିକା, ଏସିଆ ଓ ଉତ୍ତର ଆମେରିକାରେ ନିଜର ପ୍ରାଧାନ୍ୟ ଯଥେଷ୍ଟ ବୃଦ୍ଧି କଲା । ୟୁନାଇଟେଡ୍ ୱାଟରକୁ କ୍ରୟ କରି ସୁଏଜ ଆମେରିକାର ଅନ୍ୟ ଏକ ସର୍ବବୃହତ କମ୍ପାନୀ ଭାବେ ମର୍ଯ୍ୟାଦା ଲାଭ କଲା ।

ପ୍ରଥମେ ଘରୋଇ କମ୍ପାନୀଗୁଡ଼ିକୁ ଜଳ ବଣ୍ଟନ ଦାୟିତ୍ୱ ଦେବା ପୂର୍ବରୁ ସାଧାରଣତଃ ସହର କର୍ତ୍ତୃପକ୍ଷ ବା ସରକାରଗୁଡ଼ିକ ଏହାର ଭବିଷ୍ୟତ ସମ୍ପର୍କରେ ଚିନ୍ତା କରନ୍ତି ନାହିଁ ଏବଂ ପ୍ରଚୁର କିକ୍‌ବ୍ୟାକ୍ ପାଇ ଚୁକ୍ତିରେ ସ୍ୱାକ୍ଷର କରିଥାନ୍ତି । ପରବର୍ତ୍ତୀ ପର୍ଯ୍ୟାୟରେ ଏହି କମ୍ପାନୀଗୁଡ଼ିକ ଚୁକ୍ତିରେ ଖିଲାପ କରୁଥିଲେ ମଧ୍ୟ ସେମାନଙ୍କ ବିରୋଧରେ ପଦକ୍ଷେପ ନେବା ପ୍ରାୟତଃ ସମ୍ଭବ ହୋଇ ନ ଥାଏ ବା ଜାଣିଶୁଣି ନିଆଯାଇ ନଥାଏ । ୧୯୯୯ରେ ହଂଗେରୀ ରାଜଧାନୀ ବୁଦାପେଷ୍ଟରେ ଜଳ ବଣ୍ଟନ ପାଇଁ ଆରଡ଼୍‌ବ୍ଲ୍ୟୁଇ ଓ ସୁଏଜ ଆଗ୍ରହ ପ୍ରକାଶ କରିଥିଲେ ମାତ୍ର ବୁଦାପେଷ୍ଟ କର୍ତ୍ତୃପକ୍ଷ ଏହାକୁ ଏକ ଚାଲ୍ ବୋଲି ଦର୍ଶାଇ ଅଗ୍ରାହ୍ୟ କରିଥିଲେ ।

ସେହିବର୍ଷ ମଧ୍ୟ ବ୍ରିଟେନ ସରକାର ସୁଏଜ୍‌ର ସହଯୋଗୀ କମ୍ପାନୀ ନର୍ଥମ୍ବ୍ରିଆନ ୱାଟରର ଜଳଯୋଗାଣ ଅଧିକାରକୁ ଛଡାଇ ନେଇଥିଲେ । କାରଣ ଏହି କମ୍ପାନୀ ଯେଉଁଭଳି ଜଳ ଯୋଗାଣ କଲା ସେଥିରେ ପ୍ରଚୁର ପରିମାଣର ଲୌହ, ମାଂଗାନିଜ ଇତ୍ୟାଦି ବିଷାକ୍ତ ପଦାର୍ଥ ମିଳିଲା । ସେହିପରି ଜର୍ମାନ କର୍ତ୍ତୃପକ୍ଷ ମଧ୍ୟ ପୋଟ୍‌ସ ଡ୍ୟାମ

ସହରରେ ଜଳ ବଣ୍ଟନ କାର୍ଯ୍ୟରୁ ସୁଏଜକୁ ବାରଣ କରିଥିଲେ କାରଣ ଏହି କମ୍ପାନୀ ଦ୍ୱାରା ବଣ୍ଟନ କରାଯାଇଥିବା ଜଳ ଅତ୍ୟନ୍ତ ବିଷାକ୍ତ ଥିଲା । ଗୁରୁତ୍ୱପୂର୍ଣ୍ଣ କଥା ହେଲା ଯେଉଁଠାରେ ଜଳ ବଣ୍ଟନ ପାଇଁ ବୃହତ୍ କମ୍ପାନୀଗୁଡ଼ିକୁ ଅନୁମତି ଦିଆଯାଉଛି ସେଠାରେ ପ୍ରାଥମିକ ପର୍ଯ୍ୟାୟରେ ରାଷ୍ଟ୍ରୀୟ କମ୍ପାନୀର ଅନେକ କର୍ମଚାରୀଙ୍କୁ ବାଧ୍ୟତାମୂଳକ ଅବସର ଦିଆଯାଉଛି । ଉଦାହରଣ ସ୍ୱରୂପ ଆର୍ଜେଣ୍ଟିନା ରାଜଧାନୀ ବୁନୋସ ଏରେସରେ ଜଳବଣ୍ଟନ ଦାୟିତ୍ୱ ସୁଏଜକୁ ଦିଆଯିବା ମାତ୍ରେ ସରକାରୀ ସେବାରୁ ୩୦୦୦ କର୍ମଚାରୀଙ୍କୁ ଅବିଳମ୍ବେ ଛଟେଇ କରିଦିଆଯାଇଥିଲା ।

ବିଭିନ୍ନ ରାଷ୍ଟ୍ରରେ ଜଳ ଅଧିକାର ସଂକ୍ରାନ୍ତ ଆନ୍ଦୋଳନଗୁଡ଼ିକୁ ଦମନ କରିବା ପାଇଁ ସୁଏଜ୍ ଓ ଭିଭେଣ୍ଡି ସମେତ ଅନେକ ଜଳ କମ୍ପାନୀ ସରକାରକୁ ତଥା ନେତାମାନଙ୍କୁ ଆର୍ଥିକ ପ୍ରୋତ୍ସାହନ ପ୍ରଦାନ କରିଛନ୍ତି । ଗତ ୧୯୯୯-୨୦୦୦ରେ ସୁଏଜ୍ କମ୍ପାନୀ ଅନେକ ଆମେରିକୀୟ ନେତାଙ୍କୁ ପ୍ରାୟ ଦେଢ଼ ଲକ୍ଷ ଡ଼ଲାର ଘୁସ୍ ଦେଇଥିଲା ବୋଲି ହୋଇଥିବା ଅଭିଯୋଗର ସତ୍ୟତା ପ୍ରମାଣ ମିଳିଥିଲା । ଏପରିକି ବିଶ୍ୱବ୍ୟାଙ୍କ ଓ ଆନ୍ତର୍ଜାତିକ ମୁଦ୍ରାପାଣ୍ଠି କର୍ତ୍ତୃପକ୍ଷଙ୍କୁ ମନାଇବାରେ ଏହି କମ୍ପାନୀଗୁଡିକ ମଧ୍ୟ ଓସ୍ତାଦ ଥାନ୍ତି ।



# ନୀଳସ୍ୱର୍ଣ୍ଣ ଓ କଳାହୀରା

ପୃଥିବୀର ବର୍ତ୍ତମାନ ସାର୍ବଜନୀନ ଭାବେ ଗୋଟିଏ ଦ୍ରବ୍ୟପାଇଁ ଆନ୍ତର୍ଜାତିକ ଯୁଦ୍ଧମାନ ସଂଗଠିତ ହେବ, ତାହା ହେଉଛି ପେଟ୍ରୋଲିୟମ । ଏଥିପାଇଁ ହିଁ ଇରାକ୍ ଉପରେ ଆମେରିକା ଆକ୍ରମଣ କରିଥିଲା । ସମଗ୍ର ମଧ୍ୟ ପ୍ରାଚ୍ୟକୁ ଏକ ରଣଭୂମିରେ ପରିଣତ କରି ପୋଷା ମନାଇଥିବା ସାଉଦିଆରବ ଓ ଇସ୍ରାଏଲକୁ କାବୁ କରି ଇରାକ୍‌ରେ ନିଜ ସୈନ୍ୟ ରଖାଇ ମଧ୍ୟପ୍ରାଚ୍ୟକୁ ସାମରିକ ନିୟନ୍ତ୍ରଣରେ ରଖିବାର କୌଶଳ ସଫଳ ହୋଇଛି । ଏଥିପାଇଁ ଆମେରିକାର ସାମରିକ କାର୍ଯ୍ୟାଳୟ ପେଣ୍ଟାଗନ୍ ଅହରହ ଉଦ୍ୟମରତ ଥିଲା । ଇରାକ୍ ଆକ୍ରମଣ ପ୍ରମାଣିତ କରାଇଦେଲା ଆମେରିକା ନିକଟରେ କୌଣସି ବିଶ୍ୱସଂସ୍ଥା ଏପରିକି ଜାତିସଂଘ ତୁଚ୍ଛ । ପେଟ୍ରୋଲିୟମର ଏହି ଅଭୂତପୂର୍ବ ଆବଶ୍ୟକତାକୁ ଲକ୍ଷ୍ୟରେ ରଖି ଏହାକୁ କୁହାଯାଉଛି କଳାହୀରା । ଅପରପକ୍ଷେ ଅନ୍ୟ ଯେଉଁ ଏକ ଦ୍ରବ୍ୟ ଉପରେ ଯୁଦ୍ଧ ସଂଗଠିତ ହେବାକୁ ଯାଉଛି ତାହା ହେଉଛି ଜଳ ବା ନୀଳସ୍ୱର୍ଣ୍ଣ । ଶତାଧିକ ରାଷ୍ଟ୍ରରେ ଜଳକଷ୍ଟକୁ ଆଖିରେ ରଖି ଜଳକୁ ନେଇ ଅନେକ ଯୁଦ୍ଧ ହେବ ବୋଲି ମଧ୍ୟ ଚେତାବନୀ ଦିଆଗଲାଣି । ବାସ୍ତବରେ ଜଳପରି ଏକ ଅମୂଲ୍ୟ ଦ୍ରବ୍ୟର ଚାହିଦା ଏହି ସଭ୍ୟ ସମାଜ ପାଇଁ ଏତେ ଭୟାନକ ହୋଇଉଠିବ ତାହା ସମସ୍ତଙ୍କ କଳ୍ପନାର ବାହାରେ ଥିଲା । ତୈଳ ଉତ୍ପାଦନକାରୀ ରାଷ୍ଟ୍ରମାନେ ଯେପରି 'ଓପେକ୍' ସଂଗଠନ ଗଠନ କରିଛନ୍ତି ଠିକ୍ ସେହିପରି ଜଳବହୁଳ ରାଷ୍ଟ୍ରଗୁଡିକ ପକ୍ଷରୁ ଜଳ ରପ୍ତାନୀକାରୀ ରାଷ୍ଟ୍ର ନାମରେ ସଂଗଠନ ତିଆରି କରିବାକୁ ଉଦ୍ୟମ କରାଗଲାଣି । ଆଲାସ୍କା, କାନାଡା, ନରୱେ, ବ୍ରାଜିଲ, ଋଷିଆ, ମ୍ୟାଲେସିଆ ପ୍ରଭୃତି ଭୂଜଳ, ନଦୀଜଳ, ବରଫ ବହୁଳ ରାଷ୍ଟ୍ରଗୁଡିକ ପକ୍ଷରୁ ଜଳ ରପ୍ତାନୀ ପାଇଁ ଚିନ୍ତା କରାଯାଉଥିବା ବେଳେ ମଧ୍ୟପ୍ରାଚ୍ୟ, ଘଇନା, କାଲିଫର୍ଣ୍ଣିଆ, ମେକ୍ସିକୋ, ସିଂଗାପୁର, ଉତ୍ତର ଆଫ୍ରିକା ପ୍ରଭୃତି ରାଷ୍ଟ୍ର ଜଳ ଆମଦାନୀ କରିବାକୁ ଚିନ୍ତା କଲେଣି । ଜଳର ମୂଲ୍ୟ ଏହି ଦେଶଗୁଡିକ ନିମନ୍ତେ ତୈଳ ମୂଲ୍ୟଠାରୁ ଅଧିକ ହେବ । ତେବେ ଜଳ ପରିବହନ ବହୁ କଷ୍ଟ ସାଧ୍ୟ ହେଉଥିବାରୁ ଏଥି ନେଇ ଚିନ୍ତା ବ୍ୟକ୍ତ କରାଯାଇଛି । ମାତ୍ର ଜଳ ରପ୍ତାନୀ ଯୋଗୁ ପରିବେଶ ଉପରେ

ଘୋର କୁପ୍ରଭାବ ପଡିବାର ଆଶଙ୍କା ମଧ୍ୟ ରହିଛି । ଗୋଟିଏ ଦେଶକୁ ଅନ୍ୟଏକ ଦେଶରୁ ପ୍ରଚୁର ଜଳ ରପ୍ତାନୀ କରାଗଲେ ରପ୍ତାନୀକାରୀ ରାଷ୍ଟ୍ରର ଜଳ ସଂପଦ ଚିରଦିନ ପାଇଁ କ୍ଷତିଗ୍ରସ୍ତ ହେବ । ଏଥିପାଇଁ ଜଳ ଚୁକ୍ତି ନ କରିବାକୁ ଜଳ ବହୁଳ ରାଷ୍ଟ୍ରଗୁଡିକରେ ଆନ୍ଦୋଳନ ଦେଖାଯାଉଛି । ପୁଣି ବିଶାଳ ଜଳ ପାଇପ୍ ପ୍ରତିଷ୍ଠା କରାଗଲେ ଅନେକ ବିଦ୍ରୋହୀ ଶକ୍ତି ଏହାକୁ ଧ୍ୱଂସ କରିବା ପାଇଁ ଚକ୍ରାନ୍ତ କରିବା ସମ୍ଭାବନା ଥିବାରୁ ଏହା ଏକ ପ୍ରମୁଖ ସଂକଟରେ ପରିଣତ ହୋଇଛି । ଏହାସତ୍ତ୍ୱେ ଆରିଜୋନା, କାଲିଫର୍ଣ୍ଣିଆ, ମେକସିକୋରୁ ଚାଇନା ଏବଂ ମଧ୍ୟପ୍ରାଚ୍ୟ ଓ ଉତ୍ତର ଆଫ୍ରିକାରୁ ସ୍ପେନ ଓ ଗ୍ରୀସ ଯାଏ ଜଳଯୋଗାଣ ପ୍ରକ୍ରିୟା ଆରମ୍ଭ କରିବାକୁ କ୍ଷେତ୍ର ପ୍ରସ୍ତୁତ ହୋଇଛି ।

ଗତ ୨୦୦୦ରୁ ତୁର୍କୀରେ ଟ୍ୟାଙ୍କର ଜରିଆରେ ବିଭିନ୍ନ ରାଷ୍ଟ୍ରକୁ ଜଳ ଯୋଗାଣ ପ୍ରକ୍ରିୟା ଆରମ୍ଭ ହୋଇଛି । ତୁର୍କୀର ମାନଭଗାଟ ନଦୀରୁ ଟ୍ୟାଙ୍କର ସାହାଯ୍ୟରେ ଜଳଦେଇ ମାଲଟା, ସାଇପ୍ରସ, ଲିବ୍ୟା, ଇସ୍ରାଏଲ, ଇଜିପ୍ଟ ଓ ଗ୍ରୀସ୍‌କୁ ବିକ୍ରୟ କରାଯାଉଛି । ସେହିବର୍ଷ ତୁର୍କୀଠାରୁ ୪୯୦୦ କୋଟି ଲିଟର ଜଳ ବାର୍ଷିକ କ୍ରୟ କରିବାକୁ ଇସ୍ରାଏଲ ତୁର୍କୀ ସହ ଚୁକ୍ତି କରିଛି । ସେହିପରି ବ୍ରିଟେନରେ ମଧ୍ୟ ଏହି ପ୍ରକ୍ରିୟା ଦେଖାଦେଇଛି । ସ୍କଟଲ୍ୟାଣ୍ଡରୁ ପର୍ଯ୍ୟାପ୍ତ ପାଣି କ୍ରୟ କରିବା ପାଇଁ ବ୍ରିଟେନ ଓ ସ୍କଟଲ୍ୟାଣ୍ଡ ସରକାର ମଧ୍ୟରେ ଚୁକ୍ତି ହୋଇଛି ।

ସ୍କଟଲ୍ୟାଣ୍ଡ କର୍ତ୍ତୃପକ୍ଷ କେବଳ ବ୍ରିଟେନ୍‌କୁ ନୁହେଁ, ସ୍ପେନ, ମଧ୍ୟପ୍ରାଚ୍ୟ ଓ ମରକ୍କୋକୁ ଜଳ ବିକିବା ପାଇଁ ମଧ୍ୟ ଚୁକ୍ତି କରିଛନ୍ତି । ତେଣେ ଅଷ୍ଟ୍ରେଲିଆରେ ଭିଭେଣ୍ଡି-ଥେମସ ୱାଟର ଓ ବ୍ରାଉନ-ରୁଟ ଜଳ କମ୍ପାନୀ ଏକତ୍ର ଗଠନ କରିଥିବା ୟୁନାଇଟେଡ଼ ୱାଟର ଇଣ୍ଟରନ୍ୟାସନାଲ କେତେକ ଦେଶକୁ ଜଳ ବିକିବା ପାଇଁ ଅନୁମତି ପାଇଛନ୍ତି । କମ୍ପ୍ୟୁଟର ଇଂଜିନିୟରିଂ ଓ କୃଷି ବ୍ୟବସାୟ କ୍ଷେତ୍ରରେ ଆବଶ୍ୟକ ପର୍ଯ୍ୟାପ୍ତ ଜଳ ଯୋଗାଇବାକୁ ଏହି ଦୁଇ କମ୍ପାନୀ ରାଜି ହୋଇଥିବା ବେଳେ ଆଶ୍ଚର୍ଯ୍ୟଜନକ ଭାବେ କୌଣସି ସ୍ୱଦେଶୀ ଅଷ୍ଟ୍ରେଲୀୟ କମ୍ପାନୀକୁ ଏହି ସୁଯୋଗ ପ୍ରଦାନ କରା ନଯାଇ ବିଦେଶୀ କମ୍ପାନୀ ଭିଭେଣ୍ଡି- ଥେମ୍‌ସ୍ ୱାଟରକୁ ଦାୟିତ୍ୱ ଦିଆଯାଇଛି । ଏହି କମ୍ପାନୀ ବାର୍ଷିକ ୬୨୮ ନିୟୁତ ଡଲାର ପରିମାଣର ଜଳ ରପ୍ତାନୀ କରିବ ।

ଲିବ୍ୟାର ଶାସକ କର୍ଣ୍ଣେଲ ମୋଆମାର ଗଦାଫି ମଧ୍ୟ ସାହାରା ମରୁଭୂମିସ୍ଥିତ କୁଫ୍ରାଂ ବେସିନ୍‌ରୁ ଜଳ ନେବା ପାଇଁ ପର୍ଯ୍ୟାପ୍ତ ଅର୍ଥ ବିନିଯୋଗ କରି ପାଇପ୍ ପ୍ରତିଷ୍ଠା କରିଛନ୍ତି । ବାର୍ଷିକ ପ୍ରାୟ ୨୫ ବିଲିୟନ ଘନଫୁଟ ଜଳ ଏହି ପାଇପ୍ ଜରିଆରେ ଲିବ୍ୟାକୁ ଅଣାଯାଉଛି ।

କଲମ୍ବିଆ ସରକାର ଜଳ ରପ୍ତାନୀ ପାଇଁ ୧୯୯୩ରେ ନିଷିଦ୍ଧାଦେଶ ଜାରି କରିବା ସତ୍ତ୍ୱେ କେତେକ କମ୍ପାନୀ ଟ୍ୟାଙ୍କର ଜରିଆରେ ଜଳ ରପ୍ତାନୀ କରିବାକୁ ନିଷ୍ପତ୍ତି ନେଇଥିଲେ । ଟେକ୍ସାସ୍‌ର ଏକ କମ୍ପାନୀ ବିଶ୍ୱର ସର୍ବବୃହତ୍ ଟ୍ୟାଙ୍କର ଯୋଗେ ଦୈନିକ ୫ଲକ୍ଷ ଟଙ୍କାର ଜଳ ରପ୍ତାନୀ କରୁଥିଲା । ଆଲାସ୍କା ମଧ୍ୟ ନିୟମିତ ଜଳ ରପ୍ତାନୀ କରୁଛି । ପ୍ରତିଦିନ ପ୍ରଚୁର ପରିମାଣର ଜଳ ଆଲାସ୍କା ବିକ୍ରି କରୁଛି । ତେବେ ଜଳ ସଂପଦର ନିଃଶେଷ ଯୋଗୁ ଜଳ ବିକ୍ରିକୁ ବନ୍ଦ ରଖାଯାଇଛି ।

ସୁଏଜ କେନାଲର ପ୍ରତିଷ୍ଠାତା କମ୍ପାନୀ ସୁଏଜ୍ ସଂପ୍ରତି ସୁଏଜ୍ କେନାଲ ଢାଞ୍ଚାରେ ଆଉ ଏକ କେନାଲ ପ୍ରତିଷ୍ଠା କରିଛି । ଫ୍ରାନସ ଦେଇ ରୋନ ନଦୀ ଜଳ ବାର୍ସେଲୋନାକୁ ନେବା ପାଇଁ ଏହି କେନାଲ ଉଦ୍ଦିଷ୍ଟ । କାନାଡ଼ାରୁ ଆମେରିକାକୁ ଜଳ ନେବା ପାଇଁ କେନାଲ ଖନନ ଯୋଜନା କାର୍ଯ୍ୟକାରୀ କରାଯାଉଥିବା ବେଳେ ଗ୍ରାଣ୍ଡ୍ କେନାଲ କମ୍ପାନୀ ମଧ୍ୟ କ୍ୟୁବେକ୍‌ରେ ଏକ ବୃହତ ଜଳ ଭଣ୍ଡାର ନିର୍ମାଣ କରୁଛି । ଏଥିରେ ୨୦ଟି ନଦୀର ଜଳ ଲୀନ ହେବାକୁ ଲକ୍ଷ୍ୟ ରଖାଯାଇଛି ।



# ପ୍ଲାଷ୍ଟିକ୍ ବୋତଲରେ ଜୀବନ

ଜଳର ଅଧିକାର ଛଡାଇ ନେଇ ସରକାର ବିଭିନ୍ନ ଘରୋଇ କମ୍ପାନୀ ହାତରେ ଜଳ ବଣ୍ଟନ ଦାୟିତ୍ୱ ହସ୍ତାନ୍ତର କରିବା ପରେ କୋଟି କୋଟି ଲୋକଙ୍କ ଜୀବନ ନାଟିକା ପ୍ଲାଷ୍ଟିକ୍ ବୋତଲରେ ବାନ୍ଧି ହୋଇଯାଇଛି । ପ୍ଲାଷ୍ଟିକ୍ ବୋତଲ ଓ ପଲିଥିନ୍ ପ୍ୟାକେଟରେ ମିଳୁଥିବା ଜଳକୁ ନେଇ ସାରା ବିଶ୍ୱରେ ବଡ଼ ଧରଣର ବ୍ୟବସାୟ ଚାଲିଛି । ୧୯୭୦ ଦଶକରୁ ଆରମ୍ଭ ହୋଇଥିବା ଏହି ପ୍ରକ୍ରିୟା ଜରିଆରେ ବାର୍ଷିକ ୯୦୦୦ କୋଟି ଲିଟର ଜଳ ବିକ୍ରି ହେଉଛି ।

ସାରା ବିଶ୍ୱରେ ପ୍ଲାଷ୍ଟିକ୍ ବୋତଲ ଜଳ ଶିଳ୍ପରେ ଯେଉଁ କମ୍ପାନୀ ଆଗେଇ ଆସିଛନ୍ତି ସେହି କମ୍ପାନୀଗୁଡିକ ହେଲା କୋକାକଲା, ପେପସିକୋ, ପ୍ରକ୍ଟର ଆଣ୍ଡ ଗାମ୍ବଲ, ଡ଼ାନୋନ, ନେସ୍‌ଲେ, ପେରିଆର, ଏଭିଆନ, ନୟା, ପୋଲାଣ୍ଡ ସ୍ପ୍ରିଙ୍ଗ୍, ଲା କୋରିକସ, କ୍ଲିଅରଲି କାନାଡ଼ିଆନ, ପ୍ୟୁରଲି ଆଲକସାନ ଇତ୍ୟାଦି । ପୃଥିବୀର ୪୦ଟି ରାଷ୍ଟ୍ରରେ ନେସ୍‌ଲେ ପ୍ଲାଷ୍ଟିକ୍ ଜଳ ବ୍ୟବସାୟ କରୁଥିବା ବେଳେ ପାକିସ୍ଥାନ, ବ୍ରାଜିଲ, ଥାଇଲାଣ୍ଡ, ମେକ୍‌ସିକୋ, ଚାଇନା, ଭିଏତ୍‌ନାମ୍‌ରେ ନେସଲେ ଏକ ପ୍ରମୁଖ ଜଳ କମ୍ପାନୀର ସ୍ଥାନ ଗ୍ରହଣ କରିଛି ।

'ଆକ୍ୱାଫିନା' ନାମରେ ପେପ୍‌ସି କମ୍ପାନୀ ଜଳ ବଜାରକୁ ଛାଡୁଥିବା ବେଳେ ଡ଼ସାନି ନାମରେ କୋକାକଲା ଜଳ ବଜାରକୁ ଛାଡୁଛି । ବୋତଲ ଜଳ ନାମରେ ବିଶ୍ୱର ପ୍ରାୟ ୧୫୦ଟି ପ୍ରମୁଖ କମ୍ପାନୀ ବଜାରକୁ ଜଳ ଛାଡୁଥିବାବେଳେ ଏଥିରୁ ଅଧିକାଂଶ ନମୂନାରେ ଜୀବାଣୁ, ଦୂଷିତ ପଦାର୍ଥ, କୃମି ଓ ଅନେକ ଭୂତାଣୁ ରହୁଥିବା ଜଣାଯାଇଛି । ଏହି ସବୁ କମ୍ପାନୀ ମଧ୍ୟ ବୋତଲ ଜଳର ପ୍ରସାର ଲାଗି ପ୍ରସାରିତ ବିଜ୍ଞାପନ ଜରିଆରେ କୋଟି କୋଟି ଟଙ୍କା ବ୍ୟୟ କରିଥାନ୍ତି ।

ପ୍ଲାଷ୍ଟିକ୍ ବୋତଲ ଜଳର ମାତ୍ରାଧିକ ପ୍ରସାର ଯୋଗୁ ସାଧାରଣ ଭାବେ ରହିଥିବା ତୃଷାର୍ତ୍ତ ଲୋକଙ୍କୁ ଜଳ ସାହାଯ୍ୟ କରିବାର ମନୋବୃତ୍ତି ଲୋକଙ୍କଠାରୁ ଦୂରେଇ ଗଲାଣି

ଏବଂ ଜଳ ଟୋପାଏ ପାଇଁ ମଣିଷ ଟଙ୍କା ଦେଇ ପିଇବା ପରି ଏକ ଅମାନବିକ କାର୍ଯ୍ୟ ଏକ ନିତିଦିନିଆ ଘଟଣାରେ ପରିଣତ ହୋଇଗଲାଣି । ପୁଣି ପ୍ଲାଷ୍ଟିକ୍ ବୋତଲ ଶିଳ୍ପର ମାତ୍ରାଧିକ ବିକାଶ ଯୋଗୁ ଏହାର ପ୍ରତିକୂଳ ପ୍ରଭାବ ପରିବେଶ ଉପରେ ଯଥେଷ୍ଟ ପଡୁଛି ।

ସଂପ୍ରତି ପୃଥିବୀରେ ପ୍ରତିବର୍ଷ କେବଳ ବୋତଲ ଜଳ ଶିଳ୍ପ ପାଇଁ ୨ ନିୟୁତ ଟନ ପ୍ଲାଷ୍ଟିକ ବ୍ୟବହୃତ ହେଉଛି । ଜଳ ବ୍ୟବହାର ପରେ ବୋତଲଗୁଡ଼ିକୁ ଫିଙ୍ଗି ଦିଆଯାଉଥିବା ସହ ଏଗୁଡ଼ିକୁ ପୁଣି ରିସାଇକଲିଂ କରାଯାଉଥିବାରୁ ବାୟୁମଣ୍ଡଳରେ ବହୁ ପରିମାଣର ବିଷାକ୍ତ ଗ୍ୟାସ ସୃଷ୍ଟି ହେଉଛି ।

ଭାରତରେ ମଧ୍ୟ ଏହି ପ୍ରକ୍ରିୟା ଜୋରଦାର୍ ହେଉଛି । ଜଳ କମ୍ପାନୀଗୁଡ଼ିକ ସମସ୍ତ ନୀତିନିୟମ ଉଲଂଘନ କରି ପର୍ଯ୍ୟାପ୍ତ ପରିମାଣର ବୋତଲ ଉତ୍ପାଦନ କରିଥାନ୍ତି ଏବଂ ବାୟୁମଣ୍ଡଳକୁ ପ୍ରଦୂଷିତ କରିଥାନ୍ତି । ଏହା ଏକ ଅତ୍ୟନ୍ତ ଲାଭଦାୟକ ବ୍ୟବସାୟ ହୋଇଥିବାରୁ କ୍ରମଶଃ ଅଧିକରୁ ଅଧିକ କମ୍ପାନୀ ଏଥିରେ ଦୃଷ୍ଟି ନିବଦ୍ଧ କଲେଣି ।

ଭାରତରେ ପେପ୍‌ସି ଓ କୋକାକୋଲା କମ୍ପାନୀ ଜଳ ବ୍ୟବସାୟକୁ କୋଲ୍‌ଡ୍ ଡ୍ରିଙ୍କ୍‌ସ୍ ତୁଳନାରେ ଅଧିକ ଗୁରୁତ୍ୱ ଦେଉଛନ୍ତି । କୋକାକୋଲାର ବାର୍ଷିକ ବ୍ୟବସାୟ ପରିମାଣ ବିଶ୍ୱରେ ୨୨୦୦ କୋଟି ଡଲାର ହୋଇଥିବା ବେଳେ ପେପ୍‌ସିର ବ୍ୟବସାୟ ପରିମାଣ ପ୍ରାୟ ୨୧୦୦ କୋଟି ଡଲାର ହୋଇଥାଏ । ତନ୍ମଧ୍ୟରୁ ଜଳ ବ୍ୟବସାୟରୁ ସଂଗୃହୀତ ପୁଞ୍ଜିର ପରିମାଣ ସିଂହଭାଗ ଥାଏ । ବହୁରାଷ୍ଟ୍ରରେ ଜଳର ଦାମ୍ କେତେହେବ ତାହା ସରକାର ବଦଳରେ କୋକାକୋଲା ଓ ପେପ୍‌ସି ନିର୍ଦ୍ଧାରଣ କରୁଥିବା ବିଷୟ ଆଶ୍ଚର୍ଯ୍ୟଜନକ ମନେହୁଏ ।

୧୯୯୪ରେ ପ୍ରଥମେ ପେପ୍‌ସି 'ଆକ୍ୱାଫିନା' ନାମରେ ବୋତଲ ଜଳ ବଜାରରେ ବିକ୍ରୟ ଆରମ୍ଭ କରିଥିଲା । ଏହାକୁ ଲକ୍ଷ୍ୟରେ ରଖି ୧୯୯୯ରେ କୋକାକୋଲା 'ବନ୍‌ଆକ୍ୱା' ନାମରେ ୩୫ଟି ରାଷ୍ଟ୍ରରେ ଜଳ ବ୍ୟବସାୟ ଆରମ୍ଭ କଲା । ୨୦୦୫ ସୁଦ୍ଧା ଦୁଇଟିଯାକ କମ୍ପାନୀର ମୂଳଧନ ୭୦% ବୃଦ୍ଧି ପାଇଥିବା ବେଳେ ସେମାନେ ୩୪% ଜଳ ବଜାରକୁ ଅକ୍ତିଆର କରିଥିବା ଜଣାଯାଇଛି । ଆମେରିକା ଜଳ ବଜାରରେ 'ଆକ୍ୱାଫିନା' ପ୍ରାୟ ୧୬% ଅଂଶଧନ ହାସଲ କରିଛି । ମାତ୍ର କୋକାକୋଲାର ଡ଼ସାନି ଆଶ୍ଚର୍ଯ୍ୟଜନକ ଭାବେ ୧୨୪ ପ୍ରତିଶତ ବଜାର ଦଖଲ କରିଛି । ସାରା ବିଶ୍ୱରେ କୋକାକୋଲା ବାର୍ଷିକ ୨୦୦୦ କୋଟି ଥଣ୍ଡାପାନୀୟ ବିକ୍ରି କରୁଥିବା ବେଳେ ସେଥିରୁ ପ୍ରାୟ ୫୦୦କୋଟି

ବୋତଲ ଜଳ ବୋଲି ଜଣାଯାଇଛି । ସେହିପରି ପେପ୍‌ସି ମଧ୍ୟ ବାର୍ଷିକ ୧୯୦୦ କୋଟି ବୋତଲ ଥଣ୍ଡା ପାନୀୟ ଓ ଜଳ ବିଶ୍ୱରେ ବିକ୍ରି କରୁଛି ।

ପୃଥିବୀରେ ସମାଜବାଦୀ ଆନ୍ଦୋଳନର ବ୍ୟାପକ ଅଭାବ, ସାମ୍ରାଜ୍ୟବାଦୀ ଶକ୍ତିଙ୍କ ନିର୍ଦ୍ଦେଶରେ ସରକାର ପରିଚାଳନା, ସ୍ୱଦେଶୀ ଅର୍ଥନୀତି ବଦଳରେ ଆନ୍ତର୍ଜାତିକ ମୁଦ୍ରାପାଣ୍ଠି ଓ ବିଶ୍ୱ ବ୍ୟାଙ୍କ ପ୍ରଦର୍ଶିତ ଅର୍ଥନୀତି ଇତ୍ୟାଦି କାରଣ ଯୋଗୁ ପେପସି, କୋକାକୋଲା ପରି ଆଞ୍ଚଳିକସ୍ତରୀୟ କମ୍ପାନୀ ପୃଥିବୀରେ ପ୍ରମୁଖ ସ୍ଥାନ ହାସଲ କରିଛନ୍ତି । ଏହାବାଦ ଖାଉଟୀବାଦର ବିକାଶ, ତଥା କଥିତ ସଭ୍ୟ ସ୍ୱାଦୁତାର ପାଶବିକ କାମନା ମୁଖ୍ୟତଃ ବହୁରାଷ୍ଟ୍ରୀୟ କମ୍ପାନୀଗୁଡ଼ିକର ମୁଦ୍ରା-ଜ୍ୱାଳାକୁ ବୃଦ୍ଧି କରିଥାଏ । ଏଥିପାଇଁ କୌଣସି ଆନ୍ତର୍ଜାତିକ ନୀତିନିୟମକୁ ମଧ୍ୟ ବହୁରାଷ୍ଟ୍ରୀୟ କମ୍ପାନୀ ମାନି ନଥାନ୍ତି । ବହୁରାଷ୍ଟ୍ରୀୟ କମ୍ପାନୀଗୁଡ଼ିକର ମୁଦ୍ରାଜ୍ୱାଳାରେ ସଂପ୍ରତି ନିୟନ୍ତ୍ରିତ ହେଉଛି କୋଟି କୋଟି ଲୋକଙ୍କ ଜୀବନ ନାଟିକା । ଶେଷରେ ମୁଦ୍ରା-ତୃଷ୍ଣାର ଶିକାର ଯେ ଜଳ ହୋଇଛି ତାହା ପ୍ରମାଣିତ ହୋଇଛି ବିଶ୍ୱ ଅଭିଜ୍ଞତାରୁ ।



# ନୀଳ, ଟାଇଗ୍ରୀସ୍ ଓ ୟୁଫ୍ରେଟିସ୍‌ର ଶୋକ

ନୀଳ ନଦୀର ଦାନ କେବଳ ମିଶର ପାଇଁ ଯଥେଷ୍ଟ ନ ଥିଲା । ସମଗ୍ର ମାନବସଭ୍ୟତା ପାଇଁ ଏହି ନଦୀର ଭୂମିକା ଯଥେଷ୍ଟ ଥିଲା । ସେହିପରି ମଧ୍ୟ ପ୍ରାଚ୍ୟର ହୃଦୟ ରେଖା କୁହାଯାଉଥିବା ଟାଇଗ୍ରୀସ୍ ଓ ୟୁଫ୍ରେଟିସ୍ ନଦୀର ଦାନ ମଧ୍ୟ ବିଶ୍ୱ ସଭ୍ୟତାର ବିକାଶ ପାଇଁ କିଛି କମ୍ ନୁହେଁ । ମାତ୍ର ଏହି ତିନୋଟି ନଦୀକୁ ନେଇ ମଧ୍ୟ ପ୍ରାଚ୍ୟରେ ସଦାସର୍ବଦା କଳହ ଲାଗି ରହିଛି । ୟୁଫ୍ରେଟିସ୍ ନଦୀଜଳକୁ ନିଜ ଅଧିକାର ଅନ୍ତର୍ଭୁକ୍ତ କରିବା ପାଇଁ ଏକଦା ୧୯୯୦ ଜାନୁଆରୀରେ ତୁର୍କୀ ଏହି ନଦୀକୁ ଅଟକାଇ ଦେଇଥିଲା । ୟୁଫ୍ରେଟିସ୍ ନଦୀଜଳ ଦ୍ୱାରା ନୂତନ ଆଟାଟୁର୍କ ଡ୍ୟାମ୍ ଆଗରେ ଥିବା ବୃହତ୍ ହ୍ରଦକୁ ଭରିବା ଥିଲା ତୁର୍କୀର ଲକ୍ଷ୍ୟ । ୟୁଫ୍ରେଟିସ୍ ନଦୀଜଳ ସିରିୟା ପ୍ରବେଶ ନକରିପାରିବା ଯୋଗୁଁ ଇରାକ୍‌ରେ ବ୍ୟାପକ ଜଳାଭାବ ଦେଖାଗଲା । ସିରିୟା ଓ ଇରାକ୍ ପରସ୍ପରର ଶତ୍ରୁ ହୋଇଥିବାରୁ ତୁର୍କୀ ଏହାର ସୁଯୋଗ ନେଇଥିଲା । ତେବେ ଜଳାଭାବ ଉତ୍କଟ ଆକାର ଧାରଣ କରିବାରୁ ଇରାକ୍ ଓ ସିରିୟା ନିଜେ ନିଜେ ତୁର୍କୀକୁ ଧମକ ଦେଲେ । ଫଳରେ ତିନି ସପ୍ତାହ ପରେ ତୁର୍କୀ ୟୁଫ୍ରେଟିସ ନଦୀଜଳ ମୁକ୍ତ କରିଥିଲା । ଦୀର୍ଘ ୨୦ବର୍ଷପରେ ବି ଏହି ବିବାଦ ଥମି ନାହିଁ ଏବଂ ତୁର୍କୀ ଜଳ ଲୋଭରେ ୟୁଫ୍ରେଟିସ ନଦୀ ଉପତ୍ୟକାରେ ୨୨ଟି ଡ୍ୟାମ୍ ନିର୍ମାଣ କରିଛି । ଫଳରେ ସିରିୟାକୁ ଯାଉଥିବା ଜଳ ପରିମାଣ ୪୦% କମିଯିବା ଯୋଗୁ ପୁଣି ଯୁଦ୍ଧ ଆଶଙ୍କା ସେଠାରେ ଲାଗିଲାଣି ।

ତୁର୍କୀ ଓ ସିରିୟା ମଧ୍ୟରେ ଦେଖା ଦେଇଥିବା ବିବାଦ ଆନ୍ତର୍ଜାତିକ ରୂପ ନେଇଥିବା ବେଳେ ଅନେକ ସାମ୍ରାଜ୍ୟବାଦୀ ରାଷ୍ଟ୍ର ଏହି ବିବାଦରୁ ଫାଇଦା ଉଠାଇବାକୁ ଚାହିଁ ବସିଛନ୍ତି । ତେଣେ ୟୁଫ୍ରେଟିସ ନଦୀଜଳର ୪୦% ଏକାକୀ ଉପଭୋଗ କରିବା ପରେ ତୁର୍କୀ ଟାଇଗ୍ରୀସ ନଦୀ ଉପରେ ମଧ୍ୟ ଆଖି ପକାଇଛି । ଫଳରେ ଏହାର ଭୟଙ୍କର ପ୍ରଭାବ ଇରାକ୍ ଉପରେ ପଡୁଛି । ତୁର୍କୀ ଯୁକ୍ତି ଦର୍ଶାଇଛି ଯେ ଇରାକ ନିକଟରେ ତୈଳ ସଂପଦ ରହିଛି ଏବଂ ତୁର୍କୀ ନିକଟରେ ଜଳ ସଂପଦ ରହିଛି । କିଏ କାହାର ସଂପଦ

ଉପରେ ଆଖି ପକାଇବା ଅନୁଚିତ । ମାତ୍ର ଇରାକ୍ ଟାଇଗ୍ରୀସ୍ ନଦୀଜଳ ବିନା ବଞ୍ଚିବ କିପରି ? ଏହି କାରଣକୁ ନେଇ ୧୯୮୪ ଓ ୧୯୯୩ରେ ଟାଇଗ୍ରୀସ ନଦୀ କୂଳେ ସିରିୟା ଓ ତୁର୍କୀର ସଂଘର୍ଷ ମଧ୍ୟ ଘଟିଛି ।

ଟାଇଗ୍ରୀସ୍ ଓ ୟୁଫ୍ରେଟିସ୍‌ର ମିଳନସ୍ଥଳୀ ଶାଟ-ଅଲ-ଆରବ ଠାରେ ମଧ୍ୟ ଦୁଇନଦୀର ଜଳକୁ କେନ୍ଦ୍ରକରି ଇରାନ୍ ଓ ଇରାକ୍ ମଧ୍ୟରେ ୮ବର୍ଷର ଏକ ରକ୍ତାକ୍ତ ସଂଘର୍ଷ ଘଟି ଯାଇଛି । ଇରାକ୍‌ର ତତ୍‌କାଳୀନ ରାଷ୍ଟ୍ରପତି ସଦ୍ଦାମ ହୁସେନଙ୍କ ନିର୍ଦ୍ଦେଶରେ ଏହାର ମିଳନ ସ୍ଥଳୀରେ ଏକ ତୃତୀୟ ନଦୀ ଖନନ ଆରମ୍ଭ କରାଯାଇଥିଲା ଯାହାକୁ କେନ୍ଦ୍ରକରି ପୁଣି ସଂଘର୍ଷ ଘଟିଥିଲା । ଇରାକ୍ ବିରୋଧରେ ଯୁଦ୍ଧ କରିବା ପାଇଁ ତୁର୍କୀକୁ ଆମେରିକା ସହାୟତା କରି ଆସିଥିଲା । ଏପରିକି ଟାଇଗ୍ରୀସ ନଦୀଜଳ ଯେପରି ଚିରଦିନ ପାଇଁ ବିଷରେ ପରିଣତ ହେବ ସେଥିପାଇଁ ତୁର୍କୀ ମଧ୍ୟ ପଦକ୍ଷେପ ନେଇଥିଲା ।

ଟାଇଗ୍ରୀସ୍ ଓ ୟୁଫ୍ରେଟିସ୍ ନଦୀଜଳକୁ ନେଇ ବିବାଦ ଦେଖାଦେବା ପରି ନୀଳ ନଦୀ ଜଳକୁ ନେଇ ମଧ୍ୟ ସମଧରଣର ବିପଦ ରହିଛି । ନୀଳ ନଦୀର ଉପରେ ମୁଣ୍ଡରେ ବୃହତ ନଦୀବନ୍ଧ ନିର୍ମାଣ କରିବା ପାଇଁ ଇଥିଓପିଆ ଉଦ୍ୟମ କରିବା ପରେ ଇଜିପ୍ଟ ମୁଣ୍ଡରେ ବିପଦ ମାଡି ବସିଛି । ଇଥିଓପିଆ କର୍ତ୍ତୃପକ୍ଷ ୫୧୦୦ କୋଟି ଘନ ମିଟର ଜଳ ଅଟକାଇବା ପାଇଁ ନିଷ୍ପତ୍ତି ନେବାପରେ ଇଜିପ୍ଟ ଭୟଙ୍କର ଅବସ୍ଥାର ଶିକାର ହୋଇଛି । ସେହିପରି ନୀଳନଦୀରୁ ପର୍ଯ୍ୟାପ୍ତ ଜଳ ଦେବା ପାଇଁ ଲିବିୟା ସରକାର ଚାହିଁଛନ୍ତି । ଲିବିୟା ଯଦି ପର୍ଯ୍ୟାପ୍ତ ଜଳ ନେଇଯାଏ ତେବେ ଇଜିପ୍ଟ ନୀଳ ନଦୀରୁ ଜଳ ପାଇବା କଷ୍ଟକର ହେବ ।

ଆରବୀୟ ରାଷ୍ଟ୍ର ଅଧିନରେ ଥିବା ନଦୀ ଓ ମଧୁର ଜଳ ମଧ୍ୟରୁ ଇସ୍ରାଏଲ ପ୍ରତିବର୍ଷ ୧୩୦୦ ନିୟୁତ ଘନମିଟର ଜଳ ଚୋରି କରୁଥିବା ଅଭିଯୋଗ ନେଇ ଇଜିପ୍ଟ ପାର୍ଲାମେଣ୍ଟରେ ଅନେକବାର ପ୍ରସ୍ତାବ ମଧ୍ୟ ଗୃହୀତ ହୋଇଛି । ଅପରପକ୍ଷେ ଆରବ ଉପସାଗରୀୟ ଅଞ୍ଚଳରେ ବ୍ୟବହାର ହେଉଥିବା ଜଳ ପରିମାଣ ୩୫ ବିଲିୟନ ଘନମିଟରକୁ ବୃଦ୍ଧି ପାଇଥିବାରୁ ଭବିଷ୍ୟତରେ ଏହି ଅଞ୍ଚଳରେ ଯୁଦ୍ଧର କରାଳ ଝଡ ଯେ ଜଳ ପାଇଁ ମୁଣ୍ଡ ଟେକିବ ତାହା ସ୍ପଷ୍ଟ ହେଉଛି ।

ପ୍ରାୟ ୨୦୦ଟି ନଦୀ ଆନ୍ତର୍ଜାତିକ ସୀମା ସ୍ପର୍ଶ କରିଥିବାରୁ ଶତାଧିକ ଦେଶ ମଧ୍ୟରେ ନଦୀଜଳକୁ ନେଇ ମୁଣ୍ଡ ଟେକିବା ସ୍ୱାଭାବିକ । ୧୯୯୯ରେ ଲିବିୟାର ଶାସକ ମୋଆମାର ଗଦାଫି ଘୋଷଣା କରିଥିଲେ ଯେ ପରବର୍ତ୍ତୀ ମଧ୍ୟପ୍ରାଚ୍ୟ ଯୁଦ୍ଧ ଜଳ ପାଇଁ ହେବ ।

ପୃଥିବୀ ଜନସଂଖ୍ୟାର ମାତ୍ର ୪ ପ୍ରତିଶତ ଲୋକ ବସବାସ କରୁଥିବା ଉପସାଗରୀୟ ଅଞ୍ଚଳରେ ପୃଥିବୀର ସମୁଦାୟ ଗଚ୍ଛିତ ତୈଳର ୫୦ଭାଗ ନିହିତ ଥିଲେ ମଧ୍ୟ ଏହି ଅଞ୍ଚଳର ୮୦ ପ୍ରତିଶତ ଲୋକ ଜଳ ପାଇବାରୁ ବଞ୍ଚିତ । ସଂପ୍ରତି ମଧ୍ୟପ୍ରାଚ୍ୟରେ ଯେତିକି ଜଳ ବ୍ୟବହାର କରାଯାଉଛି ୨୦୨୫ ସୁଦ୍ଧା ତାହା ଅଧାକୁ କମି ଆସିବ ବୋଲି ଆଶଙ୍କା ପ୍ରକାଶ ପାଇଲାଣି । ଅପରପକ୍ଷେ ଇସ୍ରାଏଲ ଗୋଲାନ ହାଇଟ୍ସ୍ ଓ ୱେଷ୍ଟ ବ୍ୟାଙ୍କ୍ ଉପରେ ଆକ୍ରମଣ କରି ଏହି ଅଞ୍ଚଳରୁ ପର୍ଯ୍ୟାପ୍ତ ଜଳ ଅପହରଣ କରିନେଉଛି । ଏହାବାଦ ଜୋର୍ଡାନରୁ ଓ ଗାଲିଲି ସାଗରରୁ ମଧ୍ୟ ପର୍ଯ୍ୟାପ୍ତ ଜଳ ଇସ୍ରାଏଲ ନେଉଛି ଯାହାକୁ ଜୋର୍ଡାନ ସହିପାରୁ ନାହିଁ ।

ସିରିୟା ଅଧିନସ୍ଥ ଗୋଲାନ୍‌ହାଇଟ୍ସ ଏବଂ ଲେବାନନ୍‌ରୁ ବାହାରି ଜୋର୍ଡ଼ାନ ନଦୀ ଜୋର୍ଡ଼ାନ, ଇସ୍ରାଏଲ ଓ ପାଲେଷ୍ଟାଇନ୍ ଦେଇଯାଇଛି । ୧୯୪୯ରେ ଗୋଲାନ୍ ହାଇଟସ୍‌ରୁ ଇସ୍ରାଏଲ ପ୍ରଥମେ ଜଳ ନେଇଥିଲା ଏବଂ ଏହି କାରଣକୁ ନେଇ ୧୯୫୧ରେ ଗୋଲାନ ହାଇଟ୍ସ ଆକ୍ରମଣ କରିଥିଲା । ଜାତିସଂଘର ନୀତି ନିୟମ ମଧ୍ୟ ଇସ୍ରାଏଲ୍ ଉଲଂଘନ କରିଥିଲା । ଜାତିସଂଘର ବାରଣ ସତ୍ତ୍ୱେ ଇସ୍ରାଏଲ୍ ବାରମ୍ବାର ଭୁଲ କରିଥିଲା ଏବଂ ଗୋଲାନ ହାଇଟ୍ସ୍‌କୁ ନିଜ ଅଧିକୃତ ଅଞ୍ଚଳ ଦର୍ଶାଇ ୧୯୬୭ରେ ପୁଣି ଆକ୍ରମଣ କରିଥିଲା । ଲେବାନନ୍ ଦେଇ ଯାଇଥିବା ଦୁଇଟି ନଦୀଜଳକୁ ପୁଣି ପାଇବା ପାଇଁ ଇସ୍ରାଏଲ୍ ୧୯୮୨ରେ ଲେବାନନ୍ ଆକ୍ରମଣ କରିଥିଲା ଏବଂ ହାସ୍‌ବାନି ଓ ୱାଜାନି ନଦୀର ଜଳକୁ ଅଟକ କରିଥିଲା । ପରେ ଇସ୍ରାଏଲ୍ ଲିଟାନୀ ନଦୀକୁ ମଧ୍ୟ ଅକ୍ତିଆର କରିଥିଲା । ଏହି ନଦୀର ଜଳ ଇସ୍ରାଏଲ୍ ରାଜଧାନୀ ତେଲ ଆଭିଭର ୪୦ ପ୍ରତିଶତ ଲୋକଙ୍କୁ ଜଳ ଯୋଗାଇଥାଏ ।

ସେହିପରି ନୀଳ ନଦୀର ଜଳକୁ ନେଇ ସୁଦାନ, ଇଥିଓପିଆ, କେନିଆ, ଟାଞ୍ଜାନିଆ, ରୁଆଣ୍ଡା, ବୁରୁଣ୍ଡି, ଜାଇରେ, ଇଜିପ୍ଟ୍ ମଧ୍ୟରେ ଘନ ବିବାଦ ମୁଣ୍ଡଟେକୁଛି । ତେଣୁ ମଧ୍ୟ ପ୍ରାଚ୍ୟରେ ଜଳ ସମସ୍ୟା ଯେପରି ଉତ୍କଟ ଆକାର ଧାରଣ କଲାଣି ତାହା ନିକଟ ଭବିଷ୍ୟତରେ ବିସ୍ଫୋରଣ ଆକାର ଧାରଣ କରିବ ଏହା ନିଶ୍ଚିତ ।

ତୈଳ ସଂପଦରେ ଇରାକ୍ ଭରପୂର ହୋଇଥିବା ସତ୍ତ୍ୱେ ବ୍ୟାପକ ଜଳାଭାବ ଇରାକ୍‌ର ଅର୍ଥନୀତିକୁ ଅଧିକାଂଶ ସମୟ କାବୁ କରିରଖିଥାଏ । ଇରାକ୍‌ର ୯୬% ଅଞ୍ଚଳରେ ୨୦ସେଣ୍ଟିମିଟରରୁ ଅଧିକ ବର୍ଷା ହେଉନଥିବା ବେଳେ ବ୍ୟାପକ ମରୁଭୂମି ଯୋଗୁ ବାର୍ଷିକ ୩୦୦ ସେମି ଜଳ ବାଷ୍ପୀକରଣ ହୋଇଥାଏ ।

ମାନବ ସଭ୍ୟତାର ବିକାଶ ଇରାକ୍, ଇରାନ୍, ଇଜିପ୍ଟ୍ ଆଦି ଦେଶରେ ସମ୍ଭବ ହୋଇଥିବା ସତ୍ତ୍ୱେ ସେ ଦେଶଗୁଡ଼ିକର ବ୍ୟାପକ ଜଳାଭାବ ଏବେ ଅନେକ ସଙ୍କଟ ସୃଷ୍ଟି କରୁଛି । ଏହାକୁ ଦୃଷ୍ଟିରେ ରଖି ୧୯୬୭ରେ ଇରାକ୍‌ର ଶାସକ ଶାହା ଘୋଷଣା କରିଥିଲେ ଯେ ଦେଶପାଇଁ ପ୍ରତ୍ୟେକ ଜଳବୁନ୍ଦା ମୂଲ୍ୟବାନ ଏବଂ ଗୋଟିଏ ଟୋପା ଜଳ ଯେପରି ନଷ୍ଟ ନହୁଏ ସେଥିପାଇଁ ଧ୍ୟାନ ଦେବା ଆବଶ୍ୟକ ।

ସେହିପରି ୧୯୭୯ରେ ଇସ୍ରାଏଲ ସହ ଶାନ୍ତିଚୁକ୍ତି ସ୍ୱାକ୍ଷର ସମୟରେ ଇଜିପ୍ଟ ରାଷ୍ଟ୍ରପତି ଅନଓ୍ୱର୍ ସାଦତ୍ ଘୋଷଣା କରିଥିଲେ ଯେ କେବଳ ଜଳ ସଂପଦର ସୁରକ୍ଷା ବ୍ୟତୀତ ଇସ୍ରାଏଲ ସହ ଇଜିପ୍ଟ ଯୁଦ୍ଧ କରିବ ନାହିଁ । ଜୋର୍ଡାନ ରାଜା ହୁସେନ ମଧ୍ୟ ପ୍ରକାଶ କରିଥିଲେ ଯେ କେବଳ ଜଳ ପାଇଁ ଯୁଦ୍ଧ ବ୍ୟତୀତ ଅନ୍ୟ କୌଣସି ଯୁଦ୍ଧ ସେ ଇସ୍ରାଏଲ ସହ କରିବେ ନାହିଁ । ଏହାକୁ ଆଖି ଆଗରେ ରଖି ତତ୍‌କାଳୀନ ଜାତିସଂଘ ମହାସଚିବ ବୁଟ୍ରୋସ ବୁଟ୍ରୋସ ଘାଲି କହିଥିଲେ ଯେ ଏହି ଅଞ୍ଚଳରେ ଯଦି ପରେ କେବେ ଯୁଦ୍ଧ ଘଟେ ତେବେ ତାହା ଜଳ ପାଇଁ ହିଁ ଘଟିବ ।

ସଂପ୍ରତି ତୁର୍କୀ ଓ ଓମାନ୍ ପ୍ରଭୃତି ରାଷ୍ଟ୍ର ନିଜ ଦେଶର ଶିଳ୍ପୀକରଣ ପାଇଁ ଭାରତ ମହାସାଗରୀୟ ଜଳ ଉପରେ ଦୃଷ୍ଟି ନିବଦ୍ଧ କରିଛନ୍ତି । ମଧ୍ୟପ୍ରାଚ୍ୟର ଅଧିକାଂଶ ରାଷ୍ଟ୍ରମଧ୍ୟ ଜଳ ପାଇବା ପାଇଁ ଚାତକ ପକ୍ଷୀ ପରି ଚାହିଁ ବସିଛନ୍ତି ।

ନୀଳ ନଦୀ ଉପତ୍ୟକା କ୍ରମଶଃ ଶିଳ୍ପ ସମୃଦ୍ଧ ହେଉଥିବା ବେଳେ ଜନବସତି ସଂଖ୍ୟା ଦ୍ରୁତ ବେଗରେ ବୃଦ୍ଧି ପାଉଥିବାରୁ ନୀଳ ନଦୀ ଜଳକୁ ନେଇ ମଧ୍ୟ ନିକଟ ଭବିଷ୍ୟତରେ ଯୁଦ୍ଧ ସମ୍ଭାବନା ଦେଖାଗଲାଣି ।

୧୯୫୫ରେ କରାଯାଇଥିବା ଏକେ ସର୍ଭେ ଅନୁସାରେ ଜଳ ସଂକଟ ଥିବା ରାଷ୍ଟ୍ର ତାଲିକାରେ ବାହାରିନ, ଜୋର୍ଡାନ ଓ କୁଏତ୍‌ର ନାମ ଥିଲା । ୧୯୯୦ ସର୍ଭେରେ ଇସ୍ରାଏଲ୍, ପାଲେଷ୍ଟାଇନ୍, ଓମାନ୍, କାତାର୍, ୟେମେନ୍, ସାଉଦିଆରବ, ସଂଯୁକ୍ତ ଆରବ ଏମିରେଟସ ପ୍ରଭୃତି ରାଷ୍ଟ୍ରର ନାମ ଅନ୍ତର୍ଭୁକ୍ତ କରାଯାଇଛି । ଏହି ତାଲିକାରେ ଇଜିପ୍ଟ, ଇଥିଓପିଆ, ଇରାନ୍, ଲିବିୟା, ମରକ୍କୋ ଓ ସିରିଆର ନାମ ଖୁବଶୀଘ୍ର ସ୍ଥାନପାଇବାକୁ ଯାଉଛି । ୧୯୯୦ରୁ ୨୦୦୦ ମଧ୍ୟରେ ଏହିସବୁ ରାଷ୍ଟ୍ରଗୁଡ଼ିକରେ ଜନସଂଖ୍ୟା ଦୁଇଗୁଣରୁ ଅଧିକ ହୋଇଯାଇଥିବାରୁ ଜଳର ଆବଶ୍ୟକତା ମଧ୍ୟ ବହୁଗୁଣ ବଢ଼ିଯାଇଛି ।

ମଧ୍ୟ ପ୍ରାଚ୍ୟରେ ଜଳ ସଂକଟ ଦିନକୁ ଦିନ ବୃଦ୍ଧି ପାଉଥିବା ବେଳେ ଜଳ ହାସଲର ଗଭୀରତା କ୍ରମଶଃ ବୃଦ୍ଧି ପାଉଥିବା ଯୋଗୁ ସଂକଟ ଅଧିକ ଘନୀଭୂତ ହେଉଛି ।

ଅପରପକ୍ଷେ ମଧ୍ୟ ପ୍ରାଚ୍ୟରେ ସାଂପ୍ରଦାୟିକ ବିଭାଜନ, ମୁସ୍‌ଲିମ-ଅଣମୁସ୍‌ଲିମ ମତ ପାର୍ଥକ୍ୟ ତୀବ୍ର ହେଉଥିବାରୁ ବହୁ ସଂଘର୍ଷର ପରିଣାମ ଜଳ ଉପରେ ପଡୁଛି । ଉପର ମୁଣ୍ଡରେ ଥିବା ଗୋଷ୍ଠୀ ଜଳର ମାଲିକାନା ସାବ୍ୟସ୍ତ କରୁଥିବା ହେତୁ ଜଳକୁ ନେଇ ପ୍ରବଳ ସଂଘାତ ଉପୁଜୁଛି । କୁର୍ଦ୍ଦିଶ ବହୁଳ ଅଞ୍ଚଳରେ ଜଳ ସଂପଦକୁ ନେଇ ତୁର୍କୀ, ଇରାକ୍ ଓ ସିରିୟା ମଧ୍ୟରେ ସର୍ବଦା ମତପାର୍ଥକ୍ୟ ଦେଖାଦେଇ ଆସୁଛି ।

ଇଜିପ୍‌ଟ୍‌ର ଶାସକ କର୍ଣ୍ଣେଲ ନାସେର ଦେଶର ଜଳାଭାବ ଦୂର କରିବା ପାଇଁ ଆସଓ୍ୱାନ ନଦୀ ବନ୍ଧ ନିର୍ମାଣ କରିଥିଲେ ଯାହାକୁ ପ୍ରଚଣ୍ଡ ବିରୋଧ କରାଯାଇଥିଲା । ମାତ୍ର ନାସେର କୌଣସି ପ୍ରସ୍ତାବକୁ ଗ୍ରହଣ ନକରି ଏହି ନଦୀବନ୍ଧ ନିର୍ମାଣ କରିଥିଲେ ଏବଂ ଏହାର ଫଳ ସ୍ୱରୂପ ୫୦୦୦ରୁ ଅଧିକ ବର୍ଷ ରହିଆସିଥିବା ପ୍ରାଚୀନ ବାସିନ୍ଦା ବାସଚ୍ୟୁତ ହେଲେ ଏବଂ ଏକ ଲକ୍ଷ ଲୋକଙ୍କ ଜୀବିକା ଚାଲିଯାଇଥିଲା । ତେଣୁ ଜଳ ସମସ୍ୟାର ସମାଧାନ ପାଇଁ ରାଷ୍ଟ୍ର ଯେ କୌଣସି ପଦକ୍ଷେପ ନେଇପାରେ ତାହା ଏଥିରୁ ପ୍ରମାଣ ମିଳୁଛି ।

ଇସ୍ରାଏଲ ଓ ପାଲେଷ୍ଟାଇନ ମଧ୍ୟରେ ଶାନ୍ତି ପ୍ରତିଷ୍ଠା ପାଇଁ ଯେତେ ଉଦ୍ୟମ ହୋଇଥାଉ ନା କାହିଁକି ଏହି ଚୁକ୍ତିର ଭବିଷ୍ୟତ ନେଇ ଅନେକ ସନ୍ଦେହ ଉପୁଜିବା ସ୍ୱାଭାବିକ । କାରଣ ଜନବସତି ସଂକ୍ରାନ୍ତ ସମସ୍ୟାର ସମାଧାନ ବ୍ୟତୀତ ଅନ୍ୟ ଯେଉଁ ପ୍ରମୁଖ କାରଣ ଯୋଗୁ ବିବାଦ ହେଉଛି ଜଳ । ଓମାନଠାରେ ବସିଥିବା ଅନେକ ବୈଠକରେ ଜଳ ବଣ୍ଟନ ପ୍ରସଂଗରେ ଆଲୋଚନା ହେବା ଏହାକୁ ପ୍ରମାଣିତ କରୁଛି । ଅପରପକ୍ଷେ ଇସ୍ରାଏଲ ଏକ ସର୍ବଶକ୍ତିମାନ ରାଷ୍ଟ୍ର ହେବାର ଲକ୍ଷ୍ୟ ରଖୁଥିବାବେଳେ ଜଳ ସମସ୍ୟା ନେଇ ଅନେକ ଆରବ ରାଷ୍ଟ୍ର ସହ ଇସ୍ରାଏଲ ବିବାଦ କରିବାକୁ ବାଧ୍ୟ ହେଉଛି ।

୧୯୮୭-୧୯୮୯ରେ ସେନେଗାଲ ନଦୀକୁ କେନ୍ଦ୍ରକରି ସେନେଂଗାଲ ଓ ମୌରିତାନିଆ ମଧ୍ୟରେ ଯୁଦ୍ଧ ସଂଗଠିତ ହେବାପରି ସେନେଗାଲ ନଦୀ ଯେଉଁ ଦେଶ ଦେଇଯାଇଛି ସେହି ସମସ୍ତ ରାଷ୍ଟ୍ର ପରସ୍ପର ମଧ୍ୟରେ ଯୁଦ୍ଧ କରି ଆସୁଛନ୍ତି । ସେନେଗାଲ ନଦୀଜଳକୁ କେନ୍ଦ୍ର କରି ହୋଇଥିବା ଯୁଦ୍ଧରେ ଇରାକ, ସିରିଆ, ଲିବିୟା, ଓ ସାଉଦିଆରବ ପରୋକ୍ଷ ଭାବେ ଜଡିତ ହୋଇଛନ୍ତି ।

ଆରବ ଓ ଇସ୍ରାଏଲ ମଧ୍ୟରେ ହେଉଥିବା ଅନେକ ଯୁଦ୍ଧର କାରଣ ହେଉଛି ଜଳ । ୧୯୬୭ରେ ଜଳ ବଣ୍ଟନ କରିବାକୁ କେନ୍ଦ୍ରକରି ଇସ୍ରାଏଲ, ସିରିଆ ଓ ଜୋର୍ଡାନ ୬ଦିନ ଧରି ଯୁଦ୍ଧରେ ଲିପ୍ତ ଥିଲେ । ୧୯୬୭ରେ ଅନୁଷ୍ଠିତ ଆରବୀୟ ସମ୍ମିଳନୀରେ

ନିଷ୍ପତ୍ତି ନିଆଯାଇଥିଲା ଯେ ଜୋର୍ଡାନର ଉପର ମୁଣ୍ଡରେ ଥିବା ଜଳ ଧାରାର ଗତିପଥ ପରିବର୍ତ୍ତନ କରିଦିଆଯିବ ଯଦ୍ଵାରା ଇସ୍ରାଏଲ କ୍ଷତିଗ୍ରସ୍ତ ହେବ । ୧୯୬୭ର ଆରବ ସମ୍ମିଳନୀ ପୂର୍ବରୁ ଗାଲିଲି ସାଗରରେ ଇସ୍ରାଏଲ ଏକ ବୃହତ୍ ପମ୍ପ ଷ୍ଟେସନ୍ ପ୍ରତିଷ୍ଠା କରି ବଳପୂର୍ବକ ପ୍ରଚୁର ଜଳ ନେବା କାର୍ଯ୍ୟ ଆରମ୍ଭ କରିଥିଲା । ଏହି ଷ୍ଟେସନ୍‌ରୁ ଇସ୍ରାଏଲ ବାର୍ଷିକ ୪୪୦ ନିୟୁତ ଘନମିଟର ଜଳ ପାଇପ୍ ଜରିଆରେ ନେଇ ଯିବା ପ୍ରତିବାଦରେ ୟାସେର୍ ଆରାଫତ୍‌ଙ୍କ ଅଧିନସ୍ଥ ଫତେହ ଗରିଲା ସଂଗଠନ ଏହାର ବିରୋଧ କରିଥିଲା । ସିରିଆ ମଧ୍ଯ ଏ କ୍ଷେତ୍ରରେ ଇସ୍ରାଏଲ୍‌କୁ ବିରୋଧ କରିଥିଲା । ମାତ୍ର ସିରିଆ ଉପରେ ଇସ୍ରାଏଲ୍‌ର ଆକ୍ରମଣ ପରେ ସିରିୟା ନୀରବ ରହିବାକୁ ବାଧ ହୋଇଥିଲା । ଏହି ଜଳକୁ ନେଇ ପୁଣି ୧୯୭୩ରେ ଇସ୍ରାଏଲ୍ ଓ ଇଜିପ୍ଟ୍ ମଧ୍ଯରେ ଯୁଦ୍ଧ ସଂଗଠିତ ହେଲା । ତେବେ ୧୯୭୮ କ୍ୟାମ୍ପ ଡ଼ାଭିଡ଼ ସମ୍ମିଳନୀରେ ଦୁଇ ଦେଶ ମଧ୍ଯରେ ଶାନ୍ତିଚୁକ୍ତି ହୋଇଥିଲା । ତେଣୁ ମଧ୍ଯ ପ୍ରାଚ୍ୟରେ ତୈଳ ସଂପଦକୁ ନେଇ ଯେପରି ଯୁଦ୍ଧ ଘନେଇ ଉଠୁଛି ଜଳ ସଂପଦକୁ ନେଇ ମଧ୍ଯ ସେହିପରି ଯୁଦ୍ଧ ଅବସ୍ଥା ଦେଖାଯାଉଛି ।



# ଭାରତରେ ଜଳର ଘରୋଇକରଣ ଧାରା

୧୯୯୦ ଦଶକରେ ଭାରତରେ ଅର୍ଥନୀତିକୁ ଉନ୍ମୁକ୍ତ କରି ଦିଆଯିବା ପରେ ଅନେକ ଘରୋଇ କମ୍ପାନୀ ବିଭିନ୍ନ କ୍ଷେତ୍ରରେ ପ୍ରବେଶ କରିସାରିଛନ୍ତି । ବ୍ୟାପକ ଜଳ କ୍ଷେତ୍ର ମଧ୍ୟ ଏଥିରୁ ବାଦ ପଡ଼ିନାହିଁ ।

ଦିଲ୍ଲୀ, ମହାରାଷ୍ଟ୍ର, କର୍ଣ୍ଣାଟକ ଓ ମଧ୍ୟପ୍ରଦେଶରେ ଜଳର ଘରୋଇକରଣ ପ୍ରକ୍ରିୟା ଜୋର୍‌ଦାର୍ ହୋଇଛି । ଦିଲ୍ଲୀ ସରକାର ଦିଲ୍ଲୀ ଜଳ ବୋର୍ଡର ଜଳବଣ୍ଟନ ଦାୟିତ୍ୱକୁ କେବଳ ଘରୋଇ ବହୁରାଷ୍ଟ୍ରୀୟ କମ୍ପାନୀ ହାତରେ ନ୍ୟସ୍ତ କରୁଛନ୍ତି । ଏହି ବହୁରାଷ୍ଟ୍ରୀୟ କମ୍ପାନୀଗୁଡିକ ଉତ୍ତମମାନର ଜଳ ଯୋଗାଇଦେବାରେ ବିଫଳ ହେଉଥିବା ବେଳେ ଦିନକୁ ଦିନ ଜଳ ଦର ମଧ୍ୟ ବୃଦ୍ଧି ପାଇବାରେ ଲାଗିଛି । ବଲିଭିଆର କୋଚାବାମ୍ବା ସହରରେ ଜଳବଣ୍ଟନ ଦାୟିତ୍ୱ ଏକ ଘରୋଇ କମ୍ପାନୀ ହାତରେ ପ୍ରଦାନ କରାଯିବା ପରେ ଜଳ ଦର ଯେପରି ୨୦୦ଗୁଣ ବୃଦ୍ଧି ପାଇଥିଲା ସେହି ଉଦାହରଣକୁ ଦିଲ୍ଲୀ ସରକାର ଧ୍ୟାନ ନ ଦେଇ ବହୁରାଷ୍ଟ୍ରୀୟ କମ୍ପାନୀକୁ ତୁଷ୍ଟୀକରଣ କରିବା ପାଇଁ ପଦକ୍ଷେପ ନେଇଛନ୍ତି । ଘରୋଇ କମ୍ପାନୀଗୁଡିକର ଜଳ ବଣ୍ଟନ ପ୍ରଣାଳୀ ଓ ରାଜସ୍ୱ ଆଦାୟ ହାର ଉପରେ ସରକାରୀ ନିୟନ୍ତ୍ରଣ ମଧ୍ୟ ରହିନାହିଁ ।

ଦିଲ୍ଲୀ ବାଦ୍ ହାଇଦ୍ରାବାଦ, ମୁମ୍ବାଇ, ପୁନେ, ପାନାଜୀ, ଚେନ୍ନାଇ ଆଦି ସହରରେ ମଧ୍ୟ ବହୁରାଷ୍ଟ୍ରୀୟ ଜଳ କମ୍ପାନୀ ବଜାର ଦଖଲ କରି ରହିଛନ୍ତି । ବ୍ରିଟେନ୍‌ରେ ପ୍ରମୁଖ ଜଳ କମ୍ପାନୀ ଆଂଗ୍ଲିକାନ ୱାଟର୍ ଓ ବାଇଓ୍ୱାଟର ସଂପ୍ରତି ଭାରତର ବିଭିନ୍ନ ସହରରେ ଜଳ ବଣ୍ଟନ କରିବାକୁ ଯାଉଥିବା ବେଳେ ଜାମସେଦ୍‌ପୁରରେ ଟାଟା କମ୍ପାନୀକୁ ଜଳ ଯୋଗାଇବାକୁ ଦାୟିତ୍ୱ ନେଇଛି ଫ୍ରାନ୍‌ସ୍‌ର ପ୍ରମୁଖ ଘରୋଇ ଜଳ କମ୍ପାନୀ ଭିଭେଣ୍ଡି । ପୃଥିବୀର ସହରାଞ୍ଚଳରେ ୭୦ଭାଗ ଜଳ ଯୋଗାଉଥିବା ଭିଭେଣ୍ଡି ଓ ଓଣ୍ଡିଓ ଇଣ୍ଡିଆ ସର୍ଭିସ (ପୂର୍ବନାମ ନର୍ଥୁମ୍ବ୍ରିଆନ ୱାଟର) ବାଂଗାଲୋର ସହରରେ ଜଳ ବଣ୍ଟନ କରିବା ଦାୟିତ୍ୱ ନେଇଛନ୍ତି । ସେହିପରି ଆଂଗ୍ଲିକାନ ଓ ଭିଭେଣ୍ଡି ମହୀଶ୍ୱର, ବେଲଗାଁଓ, ମାଂଗାଲୋର, ବେଲାରୀ-

ରାଇଚୁର ଆଜି ସହରରେ ଜଳ ବିତରଣ ଦାୟିତ୍ୱ ନେଇଛନ୍ତି । ବିଭିନ୍ନ ଜଳ କର୍ତ୍ତୃପକ୍ଷଙ୍କୁ ହାତ କରି ଏବଂ ପ୍ରଚୁର ଲାଞ୍ଚ ପ୍ରଦାନକରି ଏହି କମ୍ପାନୀମାନେ ଜଳର ମାଲିକାନା ହାସଲ କରିନେଇଛନ୍ତି ।

ବିଶୁଦ୍ଧ ଜଳ ଯୋଗାଣକୁ ଆଳକରି ଆଉ ଏକ ବହୁରାଷ୍ଟ୍ରୀୟ କମ୍ପାନୀ ୟୁରେକା ଫୋର୍ବସ ଭାରତର ପ୍ରତ୍ୟେକ ସହରରେ ବ୍ୟାପି ଗଲାଣି । କେବଳ ନାମକୁମାତ୍ର ବିଶୁଦ୍ଧ ଜଳ ଯୋଗାଇବା ନାମରେ ଯନ୍ତ୍ରପାତି ବିକ୍ରୟ କରି ଏହି କମ୍ପାନୀ ଭାରତରୁ କୋଟିକୋଟି ଟଙ୍କା ଛାଣି ନେଲାଣି । ଏହି କମ୍ପାନୀ ଅନ୍ୟଏକ ବହୁରାଷ୍ଟ୍ରୀୟ କମ୍ପାନୀ ଇଲେକ୍ଟ୍ରୋଲକ୍ସର ୪୦ଭାଗ ହାସଲ କରିଥିବା ବେଳେ ସୁଇଜରଲ୍ୟାଣ୍ଡର ଲକ୍ସ ଇଣ୍ଟରନ୍ୟାସ୍‌ନାଲ୍ ଏଜି ସହ ମିଳିତ ଉଦ୍ୟୋଗ ସ୍ଥାପନ କରିଛି ।

ଭାରତ ଏକ ନଦନଦୀ ବହୁଳ ରାଷ୍ଟ୍ର ହୋଇଥିଲେ ମଧ୍ୟ ଏହି ଦେଶର ୬୦ଭାଗ ଲୋକ ବିଶୁଦ୍ଧ ପାନୀୟ ଜଳରୁ ବଞ୍ଚିତ । ପ୍ରାୟ ୨୦ ପ୍ରତିଶତ ଲୋକ ଦୈନିକ ଅଣବିଶୋଧିତ / ଅପରିଷ୍କୃତ ଜଳ ବ୍ୟବହାର କରିବାକୁ ବାଧ୍ୟ ହେଉଛନ୍ତି । ଗ୍ରାମାଞ୍ଚଳର ପ୍ରାୟ ୮୫ ଭାଗ ଲୋକ ଜୀବାଣୁଯୁକ୍ତ ଜଳ ପିଇଥାନ୍ତି । ୨୦୦୧ରେ କରାଯାଇଥିବା ସର୍ଭେରୁ ଜଣାଯାଇଛି ଯେ ଦେଶର ୭୦ଭାଗ ଲୋକ ପାଇପ ଜଳ ପିଇବାରୁ ବଞ୍ଚିତ ।

ଦେଶବାସୀଙ୍କୁ ସ୍ୱଚ୍ଛ ଜଳ ବଣ୍ଟନ କରିବାରେ ବିଫଳ ହୋଇଥିବା ସରକାର ବିଭିନ୍ନ ସ୍ୱାର୍ଥମୂଳକ ଚୁକ୍ତି ଜରିଆରେ ଘରୋଇ କମ୍ପାନୀକୁ ଜଳବଣ୍ଟନ ଦାୟିତ୍ୱ ଦେଇଥାନ୍ତି । ଭାରତୀୟ ଜଳ ବଜାରରେ ଏବେ କୋକାକୋଲା, ପେପ୍‌ସି, ଭିଭେଣ୍ଡି ଓ ନେସ୍‌ଲେ ଯଥେଷ୍ଟ ଶକ୍ତିଶାଳୀ ସ୍ଥାନ ହାସଲ କରିପାରିଛନ୍ତି ।

ଅପରପକ୍ଷେ ଭାରତର ଅଧିକାଂଶ ରାଜ୍ୟରେ ଫ୍ଲୋରାଇଡ୍ ବହୁଳ ଜଳ ଉପଲବ୍ଧ ହେଉଥିବାରୁ ଏହାର ଯଥେଷ୍ଟ ପ୍ରତିକୂଳ ପ୍ରଭାବ ଲୋକଙ୍କ ଉପରେ ପଡୁଛି । ଆନ୍ଧ୍ରପ୍ରଦେଶ, ଗୁଜୁରାଟ, ହରିଆନା, ଓଡ଼ିଶା, ପଞ୍ଜାବ, ରାଜସ୍ଥାନ, ତାମିଲନାଡୁ, ଉତ୍ତରପ୍ରଦେଶ, କର୍ଣ୍ଣାଟକ, ମଧ୍ୟପ୍ରଦେଶ, ମହାରାଷ୍ଟ୍ର, ବିହାର ଓ ଦିଲ୍ଲୀରେ ମିଳୁଥିବା ଜଳରେ ପର୍ଯ୍ୟାପ୍ତ ପରିମାଣର ଫ୍ଲୋରାଇଡ୍ ରହୁଛି । ଏହାସତ୍ତ୍ୱେ ଘରୋଇ କମ୍ପାନୀଗୁଡିକୁ ଜଳ ବଣ୍ଟନ ଦାୟିତ୍ୱ ଦିଆଯାଉଥିବାରୁ ଘରୋଇ କମ୍ପାନୀଗୁଡିକ ଏହି ଜଳକୁ ହିଁ ବଣ୍ଟନ କରିଥାନ୍ତି । ନିୟମ ଦୃଷ୍ଟିରୁ ଅପେକ୍ଷାକୃତ ନିରାପଦ ଅଞ୍ଚଳରୁ ଜଳ ଆଣି ବଣ୍ଟନ କରିବା ନିମନ୍ତେ କମ୍ପାନୀଗୁଡିକୁ ନିର୍ଦ୍ଦେଶ ଦିଆଯାଇଥିଲେ ମଧ୍ୟ କମ୍ପାନୀଗୁଡିକ ଏହା ଅବମାନନା କରିଥାନ୍ତି । କମ୍ପାନୀଗୁଡିକ ବିରୋଧରେ ମଧ୍ୟ କୌଣସି ପଦକ୍ଷେପ ନିଆଯାଇ ନଥାଏ । ପଶ୍ଚିମବଙ୍ଗର ବହୁ ଅଞ୍ଚଳରେ ଆର୍ସେନିକ ବହୁଳ ଜଳ ମିଳୁଥିବା ବେଳେ ଓଡ଼ିଶା ଓ ଆସାମରେ ପ୍ରଚୁର

ଲୌହ ବହୁଳ ଜଳ ମିଳୁଛି । ଏହି ସବୁ କାରଣରୁ ଭାରତରେ ପ୍ରତିବର୍ଷ ୫ଲକ୍ଷ ଲୋକ ମୃତ୍ୟୁର ଶିକାର ହୋଇଥାନ୍ତି ।

ବହୁ ବିରୋଧ ସତ୍ତ୍ୱେ ନୂଆଦିଲ୍ଲୀର ସୋନିଆ ବିହାର ଜଳ ବିଶୋଧନାଗାର ପାଇଁ ସୁଏଜ ଓ ଡ଼େଗ୍ରିମଣ୍ଟ ବହୁରାଷ୍ଟ୍ରୀୟ କମ୍ପାନୀର ସହଯୋଗୀ କମ୍ପାନୀ ଡ଼େଗ୍ରିମଣ୍ଟ ଏସଏକୁ ପ୍ରଦାନ କରାଯାଇଥିଲା । ମାତ୍ର ଉକ୍ତ କମ୍ପାନୀ ସଠିକ୍ ଦାୟିତ୍ୱ ପୂରଣ କରି ନପାରିବା ସହ ଆର୍ଥିକ ପରିଚାଳନା ଦାୟିତ୍ୱ ସଂପନ୍ନ କରିବାରେ ବିଫଳ ହୋଇଥିଲା । ସେହିପରି ଓଖ୍ଲା ଜଳ ବିଶୋଧନାଗାର ପ୍ରକଳ୍ପ ଡ଼େଗ୍ରିମଣ୍ଟକୁ ମଧ୍ୟ ପ୍ରଦାନ କରାଯାଇଥିଲା । ମାତ୍ର ଉଚ୍ଚମାନର ଜଳ ଯୋଗାଇବାରେ ଏହି କମ୍ପାନୀ ବିଫଳ ହୋଇଛି । ନଙ୍ଗୋଲୀ ଜଳ ବିଶୋଧନାଗାର ପ୍ରକଳ୍ପ ପାଇଁ ଡ଼େଗ୍ରିମଣ୍ଟକୁ ଦାୟିତ୍ୱ ଦିଆଯାଇଥିଲେ ମଧ୍ୟ ଏହି କମ୍ପାନୀର କାର୍ଯ୍ୟାରମ୍ଭ ବେଳେ ପରିଚାଳନା ଗତ ତ୍ରୁଟି ଯୋଗୁ କାର୍ଯ୍ୟରତ ସମୟରେ ୫ଜଣ ବ୍ୟକ୍ତି ମୃତ୍ୟୁବରଣ କରିଥିଲେ । ଅଶୋକ ବିହାରରେ ପ୍ରତିଷ୍ଠିତ ଜଳ ବିଶୋଧନାଗାର ପ୍ରକଳ୍ପ ଦାୟିତ୍ୱ ବ୍ରିଟେନ୍‌ର ୱେର୍ମ ଇଣ୍ଡିଆ ଲିମିଟେଡ଼କୁ ପ୍ରଦାନ କରାଯାଇଥିଲେ ମଧ୍ୟ ଏହି କମ୍ପାନୀ ସର୍ବନିମ୍ନ ସୁବିଧା ପ୍ରଦାନ କରିବାରେ ବିଫଳ ହୋଇଛି । ରିଥାଲା ଦୂଷିତ ଜଳ ପ୍ରକ୍ରିୟାକରଣ ପ୍ଲାଣ୍ଟର ଦାୟିତ୍ୱ ମଧ୍ୟ ଡ଼େଗ୍ରିମଣ୍ଟ ନେଇଥିଲ । କିନ୍ତୁ ପ୍ରକଳ୍ପର ପରିଚାଳନା ନିମନ୍ତେ କମ୍ପାନୀ ଅକ୍ଷମ ହେଲା ।

ସର୍ବଶେଷ ସର୍ଭେରୁ ଜଣାଯାଇଛି ଯେ ଦିଲ୍ଲୀ ଜଳ କର୍ତ୍ତୃପକ୍ଷ ଜଳବଣ୍ଟନ ପ୍ରଣାଳୀକୁ ବହୁରାଷ୍ଟ୍ରୀୟ କମ୍ପାନୀଗୁଡ଼ିକ ହାତରେ ଅର୍ପଣ କରି ଗୁରୁତର ତ୍ରୁଟି କରିଛନ୍ତି ଏବଂ ଜନସାଧାରଣକୁ ବିଶୁଦ୍ଧ ଜଳ ପାଇବାରୁ ବଞ୍ଚିତ କରିଛନ୍ତି ।

ଭାରତରେ ଜଳ ସମସ୍ୟା ଦିନକୁ ଦିନ ଅଧିକରୁ ଅଧିକ ଉତ୍କଟତର ହେବାରେ ଲାଗିଛି । ଅନେକ ସହରରେ ଦିନକୁ ଦୁଇବେଳା ପାଣି ଯୋଗାଣ କଷ୍ଟ ସାଧ୍ୟ ହେଉଥିବା ଦେଖାଯାଉଛି । କେରଳର କୋଟାୟମ ଜିଲ୍ଲାର ଅତିଥିମାନଙ୍କୁ ପାଣି ଗ୍ଲାସେ ଦେବା ପାଇଁ କୁଣ୍ଠାବୋଧ କରାଯାଉଛି । ଏକ ସର୍ଭେରୁ ଜଣାଯାଇଛି ଯେ ଜଣେ ଗ୍ରାମାଞ୍ଚଳ ମହିଳା ବର୍ଷସାରା ଜଳ ପାଇଁ ହାରାହାରି ୪୦୦୦ କିମି ବାଟ ଚାଲିଥାଏ । କେରଳର ପ୍ଲାଚିମାଡାରେ ଜଳଯୋଗାଣ ଦାୟିତ୍ୱ କୋକାକୋଲା ହାତରେ ପ୍ରଦାନ କରିବା ପରଠାରୁ ସେଠାରେ ଜଳ ଦୁଷ୍ପ୍ରାପ୍ୟ ହୋଇପଡିଛି । ଓଡ଼ିଶାର ଟିଟିଲାଗଡ଼ (ତତଲାଗଡ଼)ରେ ଜଳ ସମସ୍ୟା ଏତେ ଉତ୍କଟ ଆକାର ଧାରଣ କରୁଛି ଯେ ଏପ୍ରିଲ-ମେ ମାସରେ ସେଠାରେ ପାଣିଡବା ପିଛା ୮ରୁ ୧୨ ଟଙ୍କା ଦରରେ ବିକ୍ରି ହେଉଛି । ମହାରାଷ୍ଟ୍ର, ଗୁଜୁରାଟ ଇତ୍ୟାଦି ରାଜ୍ୟର ଅଧିକାଂଶ ଗ୍ରାମର ମହିଳାମାନେ ଦୈନିକ ହାରାହାରି ୫କିମି ପଥ ଅତିକ୍ରମ କରିଥାନ୍ତି ।

ବିଭିନ୍ନ ଆନ୍ତର୍ଜାତିକା/ବହୁରାଷ୍ଟ୍ରୀୟ କମ୍ପାନୀଗୁଡିକ ସହ ମିଶି ଭାରତରେ ଜଳବଣ୍ଟନ କରିବାକୁ ଅନେକ ଭାରତୀୟ ଶିଳ୍ପ ମହାସଂଘ ମଧ୍ୟ ଚେଷ୍ଟିତ । ଭାରତୀୟ ଶିଳ୍ପ ମହାସଂଘ (Confederation of Indian Industry) ଏ ସଂପର୍କରେ ବହୁ ଆଲୋଚନା ଚକ୍ର କରି ସୁଏଜ, ଭିଭେଣ୍ଡି ଇତ୍ୟାଦି କମ୍ପାନୀ ସହ ଘରୋଇ ଅଂଶଗ୍ରହଣକୁ ସ୍ୱାଗତ କରିଛି ।

ଭାରତରେ ବହୁରାଷ୍ଟ୍ରୀୟ ଜଳକମ୍ପାନୀଗୁଡିକୁ ସାହାଣ ମେଲା କରି ଦିଆଯିବା ପରେ ପ୍ରାୟ ୮ଟି ବହୁରାଷ୍ଟ୍ରୀୟ ଜଳକମ୍ପାନୀର ବାର୍ଷିକ ବ୍ୟବସାୟ ୩୦୦ ନିୟୁତ ଡଲାର ହୋଇଛି । ସଂପ୍ରତି ଭିଭେଣ୍ଡି (ବର୍ତ୍ତମାନ ନାମ ଭିଓଲିଆ ୱାଟର), ବେଟେଲ, ଆଇ ଏଲ ଆଣ୍ଡ ଏଫ ଏସ, ଏଲ ଆଣ୍ଡ୍ ଟି, ଥର୍ମାସ୍କ, ଥେମ୍ସ୍ ୱାଟର୍, ଆଂଗ୍ଲିକାନ୍ ୱାଟର, ବାଇ ୱାଟର ପ୍ରଭୃତି କମ୍ପାନୀ ଭାରତରେ ନିଜର ଆସ୍ଥାନ ଦୃଢ଼ କରିପାରିଛନ୍ତି ।



# ବଲିଭିଆ: ଏକ ଶ୍ରେଷ୍ଠ ଉଦାହରଣ

ବଲିଭିଆରେ ଅର୍ଥନୈତିକ ଉଦାରୀକରଣ କାର୍ଯ୍ୟ ଆରମ୍ଭ କରିବା ପାଇଁ ବ୍ରେଟେନ-ଉଡ୍ ପ୍ରତିଷ୍ଠାନ ଜରିଆରେ ଆନ୍ତର୍ଜାତିକ ମୁଦ୍ରାପାଣ୍ଠି ଓ ବିଶ୍ୱବ୍ୟାଙ୍କ ଚଳାଇ ଆସିଥିବା ଉଦ୍ୟମ ୧୯୮୫ରେ ସଫଳ ହେଲା । ସେତେବେଳକୁ ବଲିଭିଆର ମୁଦ୍ରାପାଣ୍ଠି ହାର ଯଥେଷ୍ଟ ବୃଦ୍ଧି ପାଇଥିଲା । ୧୯୮୫ ସେପ୍ଟେମ୍ବର ମାସରେ ବଲିଭିଆ ଶାସକ ଭିକ୍ଟର ପାଜ୍ ଏଷ୍ଟେନ୍‌ସୋରୋ ଆନ୍ତର୍ଜାତିକ ମୁଦ୍ରାପାଣ୍ଠି ନିର୍ଦ୍ଦେଶିତ ଭିତ୍ତିଭୂମି ସଜାଡିବା ଯୋଜନା(Structural Adjustment Programme- SAP)କୁ କାର୍ଯ୍ୟକାରୀ କଲେ । ଫଳରେ ବଲିଭିଆର ମୁଦ୍ରାର ଯଥେଷ୍ଟ ଅବମୂଲ୍ୟାୟନ ଘଟିଥିଲା ଏବଂ ସମସ୍ତ ରାଷ୍ଟ୍ରୀୟ ଉଦ୍ୟୋଗରୁ ୫୦,୦୦୦ରୁ ଅଧିକ କର୍ମଚାରୀକୁ ଛଟେଇ କରିଦିଆଗଲା । ଦରବୃଦ୍ଧି ନିୟନ୍ତ୍ରଣ କରିବା ପାଇଁ ଯେଉଁ ସରଳୀକରଣ ଯୋଜନା କାର୍ଯ୍ୟକାରୀ କରାଗଲା ତାହାର ବ୍ୟାପକ ପ୍ରତିକୂଳ ପ୍ରଭାବ ଜାତୀୟ ଅର୍ଥନୀତି ଉପରେ ପଡିଲା । ଶତାଧିକ ଖଣି କାର୍ଯ୍ୟ ବନ୍ଦ ହୋଇଯିବା ସହ କେବଳ ଖଣି କ୍ଷେତ୍ରରୁ ୨୩୦୦୦ କର୍ମଚାରୀଙ୍କୁ ଛଟେଇ କରିଦିଆଗଲା । ୧୯୯୩ରେ ଗଂଗାଲୋ ସାଞ୍ଚେଜ ଡି୍ ଲୋସଡ଼ା ବଲିଭିଆ ରାଷ୍ଟ୍ରପତି ନିର୍ବାଚିତ ହେବା ପରେ ଦର୍ଶାଇଥିଲେ ଯେ ବଲିଭିଆରେ ଭିତ୍ତିଭୂମି ସଜାଡିବା ଯୋଜନା ଆରମ୍ଭ କରିବା ଯୋଗୁ ଦେଶର ପ୍ରଭୂତ କ୍ଷତି ଘଟିଥିଲା ଏବଂ ୫୦ ହଜାର କର୍ମଚାରୀଙ୍କୁ ଛଟେଇ କରିଦିଆଗଲା । ଏହା ବଲିଭିଆ ସରକାରଙ୍କ ଏକ ଐତିହାସିକ ଭୁଲ୍ । ଆଶ୍ଚର୍ଯ୍ୟଜନକ ଘଟଣା ଥିଲା ଯେ ସେହି ସମୟରେ ମୁଦ୍ରାସ୍ଫୀତି ହାର ବାର୍ଷିକ ୨୪,୦୦୦% ବେଗରେ ବୃଦ୍ଧି ହୋଇଥିଲା ଯାହା ବିଶ୍ୱରେ ଏ ଯାଏ କେଉଁଠି ଦେଖାଯାଇନାହିଁ ।

୧୯୯୨ ମସିହାରେ ଦ୍ୱିପାକ୍ଷିକ ବିନିଯୋଗ ଚୁକ୍ତି (Bilateral Investment Treaties -BIT) ଜରିଆରେ ବିଲିଭିଆର କୋଚାବାମ୍ବା ସହରରେ ଜଳ ଯୋଗାଇବା ନିମନ୍ତେ ସରକାର ଆମେରିକୀୟ ଜଳ କମ୍ପାନୀ ବେଚେଲ ସହ ଏକ ଚୁକ୍ତି କରିଥିଲେ । ବେଚେଲ କମ୍ପାନୀ ପ୍ରଥମେ ସାମାନ୍ୟ ଉନ୍ନତ ଧରଣର ଜଳ ଯୋଗାଇବା ପରେ ଏଥିରୁ ବିଚ୍ୟୁତ ହୋଇଥିଲା ଏବଂ କମ୍ପାନୀର ଅମନଯୋଗିତା ହେତୁ ଜଳ ଦର ଆକାଶଛୁଆଁ ବୃଦ୍ଧି

ପାଇଥିଲା । ଏହାକୁ ନେଇ କୋଚାବାମ୍ବା ସହରରେ ବ୍ୟାପକ ଜନମତ ସୃଷ୍ଟି ହୋଇଥିଲା । ପୂର୍ବରୁ ଅସଜଡ଼ା ଅର୍ଥନୀତିକୁ ସୁଧାରିବା ପାଇଁ ବିଶ୍ୱବ୍ୟାଙ୍କ ୨୫ନିୟୁତ ଡଲାର ସହାୟତା ଦେବା ନିମନ୍ତେ ବିଲିଭିଆ ସରକାରକୁ ପରାମର୍ଶ ଦେଇଥିଲେ । ମାତ୍ର ବିଶ୍ୱବ୍ୟାଙ୍କ ସର୍ତ୍ତ ଦର୍ଶାଇଥିଲା ଯେ କୋଚାବାମ୍ବା ସହରରେ ଜଳର ଘରୋଇକରଣ କରାଗଲେ ହିଁ ଏହି ଅର୍ଥ ସହାୟତା କରାଯିବ । ବଲିଭିଆ ସରକାର ଏହାକୁ ମାନିନେବା ପରେ ଏହି ଅର୍ଥ ଉଚ୍ଚ ସୁଧ ହାରରେ ଋଣ ମିଳିଥିଲା । ଲାଟିନ ଆମେରିକାର ଏହି ସର୍ବାଧିକ ଗରୀବ ରାଷ୍ଟ୍ର ବିଲିଭିଆର ଅର୍ଥନୀତିକୁ ନିଜର ସଂପୂର୍ଣ୍ଣ ନିୟନ୍ତ୍ରଣରେ ରଖିବା ପରେ ବିଶ୍ୱବ୍ୟାଙ୍କ ବଲିଭିଆ ଅର୍ଥନୀତିକୁ ସଂପୂର୍ଣ୍ଣ ଧ୍ୱଂସ କରିବା ପାଇଁ ଯୋଜନା କରିଥିଲା । ମାତ୍ର କୋଚାବାମ୍ବାରେ ଜଳର ଘରୋଇକରଣ ବିରୋଧରେ ପ୍ରବଳ ଆନ୍ଦୋଳନ ମୁଣ୍ଡ ଟେକିଲା ଏବଂ ଏହାର ନେତୃତ୍ୱ ନେଇଥିଲେ ଲା କୋର୍ଡ଼ିଆଡ଼ୋରା । କୋଚାବାମ୍ବାରେ ଦେଖାଦେଇଥିବା ବିଶାଳ ଗଣ ବିଦ୍ରୋହରେ ଶଙ୍କିତ ହୋଇ ବେଚେଲ ଓ ଏହାର ସହଯୋଗୀ କମ୍ପାନୀ ଅଗସ ଡେଲ ଟୁନାରୀ ୨୦୦୦ ଏପ୍ରିଲ ୧୦ରେ ବଲିଭିଆ ତ୍ୟାଗ କରିଥିଲେ । ଆନ୍ଦୋଳନ ଚାପରେ ବଲିଭିଆ ସରକାର କୋଚାବାମ୍ବାର ଜଳବଣ୍ଟନ ଦାୟିତ୍ୱ ସ୍ଥାନୀୟ ମ୍ୟୁନିସପାଲ କର୍ମଚାରୀ ୟୁନିଅନ ହାତରେ ଅର୍ପଣ କରିଥିଲେ । ଆନ୍ଦୋଳନ ଚାଲିଥିବା ସମୟରେ ବେଚେଲ କମ୍ପାନୀ ବଲିଭିଆ ସରକାରଙ୍କ ବିରୋଧରେ କ୍ଷତିପୂରଣ ବାବଦରେ ୪୦ ନିୟୁତ ଡଲାରର ମାମଲା ମଧ୍ୟ ଦାଏର କରିଥିଲା । ମାତ୍ର ଜନସାଧାରଣଙ୍କ ଚାପରେ ବେଚେଲ ପରାସ୍ତ ହୋଇଥିଲା ।

ବଲିଭିଆରୁ ବେଚେଲ ବିଦାୟ ନେବା ପରେ ବଲିଭିଆବାସୀ ଏକ ନୂଆ ଶିହରଣ ଆହରଣ କରିଥିଲେ ଏବଂ ଜଳର ଘରୋଇକରଣ ବିରୋଧରେ ବଜ୍ର ଶପଥ କରିଥିଲେ । ବଲିଭିଆବାସୀ ପ୍ରମାଣ କରାଇ ଦେଇଥିଲେ ଯେ ଗଣ ସଂଗ୍ରାମ ନିକଟରେ କୌଣସି ବହୁରାଷ୍ଟ୍ରୀୟ କମ୍ପାନୀ ତିଷ୍ଠିବା ସମ୍ଭବ ନୁହେଁ ।



# ବିଦେଶୀ ପ୍ଲାଷ୍ଟିକ୍ ଓ ଭାରତ ଜଳ

ବିଶ୍ୱ ବାଣିଜ୍ୟ ସଂଗଠନର ନିର୍ଦ୍ଦେଶ ଅନୁସାରେ ପ୍ରଥମ ବିଶ୍ୱର ଯାବତୀୟ ପ୍ଲାଷ୍ଟିକ୍ ସାମଗ୍ରୀ ଓ ବର୍ଜ୍ୟବସ୍ତୁର ରପ୍ତାନୀସ୍ଥଳ ଭାରତ ସମେତ ତୃତୀୟ ବିଶ୍ୱ ପାଲଟିଛନ୍ତି । ଆମେରିକା, ବ୍ରିଟେନ, କାନାଡ଼ା, ଫ୍ରାନସ ଆଦି ଶିଳ୍ପୋନ୍ନତ ରାଷ୍ଟ୍ରରେ ପର୍ଯ୍ୟାପ୍ତ ପରିମାଣର ବ୍ୟବହୃତ କଂପ୍ୟୁଟର ସାମଗ୍ରୀ, ଲୁହା, ଆଜ୍‌ବେଷ୍ଟସକୁ ସେଠାରେ ରିସାଇକ୍ଲିଂ ନକରି ଭାରତ ସମେତ ଅନେକ ଦରିଦ୍ର ରାଷ୍ଟ୍ରକୁ ପଠାଯାଉଛି । ଫଳରେ ଏଠାରେ ସେହି ବ୍ୟବହୃତ ସାମଗ୍ରୀଗୁଡ଼ିକର ରିସାଇକଲିଂ କରାଯିବା ଦ୍ୱାରା ଦେଶର ପରିବେଶ ନଷ୍ଟ ହେବା ସହ ପର୍ଯ୍ୟାପ୍ତ ପରିମାଣର ଜଳ ମଧ୍ୟ ନଷ୍ଟ ହେଉଛି । ୨୦୦୫ ମସିହା ଶେଷ ବେଳକୁ ଫ୍ରାନସର ଯୁଦ୍ଧ ଜାହାଜ କ୍ଲେମେନସିଉକୁ ଭାରତ ପଠାଯିବା ଏବଂ ସେଥିରେ ପର୍ଯ୍ୟାପ୍ତ ପରିମାଣର କର୍କଟ ରୋଗସୃଷ୍ଟିକାରୀ ଆଜ୍‌ବେଷ୍ଟସ୍ ଥିବାରୁ ଏହାକୁ ଭାରତ ଭିତରେ ପ୍ରବେଶ ଅନୁମତି ନ ଦେବା ଲାଗି ସୁପ୍ରିମ୍ କୋର୍ଟରେ ମାମଲା ଦାଏର ହେବା ଏବଂ ଶେଷରେ ଜାହାଜ ଫେରିଯିବା ଘଟଣାରୁ ସ୍ପଷ୍ଟ ହୋଇଛି ଯେ ଶିଳ୍ପୋନ୍ନତ ରାଷ୍ଟ୍ରଗୁଡ଼ିକ କିପରି ଭାବେ ତୃତୀୟ ବିଶ୍ୱ ଉପରେ ଆକ୍ରମଣ କରନ୍ତି ।

ଆମେରିକା, ବ୍ରିଟେନ୍, ପ୍ରଭୃତି ରାଷ୍ଟ୍ରରେ କଂପ୍ୟୁଟର ଯନ୍ତ୍ରପାତିର ଆୟୁଷ ମାତ୍ର ୨ବର୍ଷ । ୨ବର୍ଷ ପରେ ଏଗୁଡ଼ିକୁ ବ୍ୟବହାର କରାଯାଏ ନାହିଁ । ଏହାଛଡ଼ା ଶିଳ୍ପୋନ୍ନତ ରାଷ୍ଟ୍ରଗୁଡ଼ିକରେ ବ୍ୟବହୃତ କଂପ୍ୟୁଟର ଯନ୍ତ୍ରାଂଶଗୁଡ଼ିକର ରିସାଇକ୍ଲିଂ ନିଷିଦ୍ଧ କରାଯାଇଥିବାରୁ ସେଗୁଡ଼ିକୁ ଭାରତ, ଚାଇନା, ପାକିସ୍ଥାନ ପ୍ରଭୃତି ରାଷ୍ଟ୍ରକୁ କମ୍‌ଦାମରେ ରପ୍ତାନୀ କରିଦିଆଯାଇଥାଏ । ଆମେରିକାରେ ସଂଗୃହୀତ କଂପ୍ୟୁଟର ଓ ପ୍ଲାଷ୍ଟିକ୍ ବର୍ଜ୍ୟବସ୍ତୁରୁ ୮୦ଭାଗ ବାହାରକୁ ରପ୍ତାନୀ କରାଯାଇଥାଏ । ସେଥିରୁ କେବଳ ୪୫ଭାଗ ଭାରତକୁ ହିଁ ପଠାଯାଇଥାଏ । ବାସେଲ ଚୁକ୍ତି (Basel Convention) ଅନୁସାରେ ବିଦେଶକୁ ଏଧରଣର ବର୍ଜ୍ୟବସ୍ତୁ ରପ୍ତାନୀ କରିବା ଅପରାଧ ହୋଇଥିଲେ ମଧ୍ୟ ଏହି ଆଇନ କେବଳ ଚିଠାରେ ହିଁ ରହିଛି । ଯେଉଁ ସବୁ ଦ୍ରବ୍ୟ ଭାରତକୁ ରପ୍ତାନୀ କରାଯାଉଛି ସେଗୁଡ଼ିକ ମଧ୍ୟରେ ରହିଛି ମନିଟର, କି ବୋର୍ଡ, ମଦରବୋର୍ଡ଼, କ୍ୟାଥୋଡ୍ ରେ ଟ୍ୟୁବ, ପ୍ରିଣ୍ଟେଡ୍

ବୋର୍ଡ୍, କଂପ୍ୟୁଟର ବ୍ୟାଟେରୀ, ସୁଇଚ, କାପାସିଟର, ଟ୍ରାନସଫର୍ମର, କେବଲ, ପଲିଭିନାଇଲ କ୍ଲୋରାଇଡ଼ (ପିଭିସି) ଇତ୍ୟାଦି । ଏହିସବୁ ଯନ୍ତ୍ରାଂଶରେ କ୍ୟାଡ୍‌ମିୟମ, ଲେଡ୍ ଅକ୍‌ସାଇଡ୍, କ୍ରୋମିୟମ୍, ପଲିକ୍ଲୋରିନେଟେଡ୍ ବାଇଫାଇନାଲ, ଆଲିୟମ, ପାରଦ ଇତ୍ୟାଦି ଥିବାରୁ ଏବଂ କଂପ୍ୟୁଟର ଯନ୍ତ୍ରାଂଶର ରିସାଇକଲିଂ ପରେ ଏସବୁ ଦ୍ରବ୍ୟ ବାୟୁମଣ୍ଡଳରେ ଓ ଜଳରେ ମିଶୁଥିବାରୁ ସେ ଦେଶରେ ଏସବୁର ପ୍ରକ୍ରିୟାକରଣ ନକରି ଭାରତ ସମେତ ବହୁରାଷ୍ଟ୍ରକୁ ପଠାଇ ଦିଆଯାଇଥାଏ ।

ସଂପ୍ରତି ପ୍ରତିବର୍ଷ ୨ଲକ୍ଷ ଟନ ଏହି ଧରଣର ବର୍ଜ୍ୟବସ୍ତୁ ଭାରତ ଆମଦାନୀ କରୁଛି । ସରକାରୀ ସ୍ତରରେ ଏସବୁ ଦ୍ରବ୍ୟ ଆମଦାନୀ ହେଉଥିବା ବେଳେ ଘରୋଇ କମ୍ପାନୀ ମଧ୍ୟ ଏସବୁ ଆମଦାନୀ କରୁଛନ୍ତି । ଆଶ୍ଚର୍ଯ୍ୟର କଥା ଅନେକ ଆମେରିକୀୟ, ଜାପାନ, ବ୍ରିଟେନ୍ କମ୍ପାନୀ ଭାରତରେ ପ୍ଲାଣ୍ଟ୍ ନିର୍ମାଣ କରି ଏହି ଦ୍ରବ୍ୟଗୁଡିକର ରିସାଇକଲିଂ କରି ନୂଆ ସାମଗ୍ରୀ ତିଆରି କରୁଛନ୍ତି ଏବଂ ସେଗୁଡିକ ନିଜ ଦେଶକୁ ରପ୍ତାନୀ କରୁଛନ୍ତି । ସେହିପରି ସଂଯୁକ୍ତ ଆରବ ଏମିରେଟସ ଓ ଉପସାଗରୀୟ ରାଷ୍ଟ୍ରଗୁଡିକଠାରୁ ଭାରତ ବର୍ଜ୍ୟ ତୈଳ ସାମଗ୍ରୀ ମଧ୍ୟ ଆମଦାନୀ କରୁଛି ଯାହାର ପ୍ରଭାବ ଜଳ ଉପରେ ଅତ୍ୟନ୍ତ ମାରାତ୍ମକ ।

ଆମେରିକୀୟ କମ୍ପାନୀ ପେପ୍‌ସି ଅତ୍ୟନ୍ତ ଚାଲାକି କରି ଭାରତରେ ପ୍ଲାଷ୍ଟିକ କାରଖାନା ପ୍ରତିଷ୍ଠା କରିଛି ଏବଂ ଆମେରିକାର ବୋତଲ ତିଆରି ନକରି ଭାରତରେ ବୋତଲ ତିଆରି କରି ଆମେରିକାକୁ ପଠାଉଛି । ୧୯୯୫ରୁ ୨୦୦୦ ମଧ୍ୟରେ ପେପସି କମ୍ପାନୀ ୪୫ ହଜାର ଟନ୍ ପ୍ଲାଷ୍ଟିକ ବୋତଲ ଓ ସାମଗ୍ରୀ ଏଠାରୁ ରପ୍ତାନୀ କରିଥିବା ଜଣାଯାଇଛି । ଆମେରିକୀୟ କଂପାନି ଡ଼ିଏଫ ଗୋଲଡ଼ସ୍ମିଥ ଓ ମେଟାଲ କର୍ପୋରେସନ ଅତୀତରେ ୧୧୮ଟନ୍ ଅତ୍ୟନ୍ତ ବିଷାକ୍ତ ପାରଦ ଭାରତକୁ ପଠାଇଥିଲା ଏବଂ ଉଦ୍ଦେଶ୍ୟ ଥିଲା ଏଠାରେ ରିସାଇକଲିଂ କରି ପୁଣି ଆମେରିକାକୁ ପଠାଇବା ପାଇଁ । ମାତ୍ର ଶେଷ ମୁହୂର୍ତ୍ତରେ ଏହା ଧରା ପଡିଗଲା ।

କେରଳରେ କୋକାକୋଲା କମ୍ପାନୀ ପ୍ରତିଷ୍ଠା କରିଥିବା ବଟଲିଂ ପ୍ଲାଣ୍ଟରେ ମଧ୍ୟ ପର୍ଯ୍ୟାପ୍ତ ପରିମାଣର କ୍ୟାଡ୍‌ମିୟମ ବାହାରୁଥିଲା । ଏହି ପ୍ଲାଣ୍ଟ୍ ଯୋଗୁ ଦୈନିକ ୧୦କୋଟି ଲିଟର ଜଳ ବିଷାକ୍ତ ହେଉଥିଲା । ରାଜ୍ୟରେ କୋକାକୋଲା ବିରୋଧୀ ଆନ୍ଦୋଳନ ପରେ ଏହି ପ୍ଲାଣ୍ଟ୍ ବନ୍ଦ ହୋଇଥିଲା । ପ୍ଲାଷ୍ଟିକ୍‌ର ରିସାଇକ୍ଲିଂ କେବଳ ପର୍ଯ୍ୟାପ୍ତ ପରିମାଣର ଭିନାଇଲ କ୍ଲୋରାଇଡ଼, ଏଥିଲିନ ଅକସାଇଡ଼, ଜାଇଲିନ ପ୍ରଭୃତି ବାହାରିଥାଏ ଯାହା ଜଳକୁ ସଂପୂର୍ଣ୍ଣ ବିଷାକ୍ତ କରିଦେବା ସହ ମଣିଷ ଶରୀରରେ କର୍କଟ

ରୋଗ ସୃଷ୍ଟିକରେ । ଏହି ସବୁ ପଦାର୍ଥ ମନୁଷ୍ୟର ରକ୍ତ, ଅସ୍ଥି, ଯକୃତ୍, ଫୁସ୍‌ଫୁସ୍ ପାଇଁ ଅତ୍ୟନ୍ତ ବିପଦ ସୃଷ୍ଟି କରିଥାଏ ।

ସମସ୍ତ ନିୟମକୁ ଉଲ୍ଲଂଘନ କରି ଗତ ୨୦୦୪-୨୦୦୫ରେ ଫ୍ରାନ୍‌ସ୍‌ରୁ ୧୦୯ଟନ ବିଷାକ୍ତ ଆଜବେଷ୍ଟସ୍ ଆମଦାନୀ କରାଯାଉଥିବା ବେଳେ ସେହିବର୍ଷ ଅଷ୍ଟ୍ରେଲିଆ ଓ ବ୍ରିଟେନରୁ ୨୦୦ଟନ ମେଡ଼ିକାଲ ବର୍ଜ୍ୟ ପଦାର୍ଥ ଆମଦାନୀ ହୋଇଥିଲା । ୨୦୦୩-୨୦୦୪ରେ ଫ୍ରାନ୍‌ସ୍‌ରୁ ୨୦ଟନ କର୍କଟ ରୋଗ ସୃଷ୍ଟିକାରୀ ପଲିକ୍ଲୋରିନେଟେଡ଼୍ ବାଇଫିନାଇଲ ଆମଦାନୀ କରାଯାଇଥିଲା ।

ସର୍ବତ୍ର ଜଳ ଉପରେ ବିଦେଶୀ କମ୍ପାନୀଗୁଡ଼ିକର ଏକଛତ୍ର ମାଲିକାନାର ପ୍ରଭାବ ଏବେ ହୁଏତ ଅନୁଭୂତ ହୋଇପାରି ନଥାଏ । ମାତ୍ର ଦିନ ଆସିବ ଯେତେବେଳେ ଟୋପାଏ ବିଶୁଦ୍ଧ ଜଳ ପାଇବା ସ୍ୱପ୍ନର ବ୍ୟାପାର ହୋଇଉଠିବ ।



# ହତଭାଗିନୀ ଓଡ଼ିଶାର ଶେଷ ହସ

ରାଜ୍ୟରେ ବହୁରାଷ୍ଟ୍ରୀୟ କମ୍ପାନୀଗୁଡ଼ିକୁ ଅବାଧ ସୁଯୋଗ ପ୍ରଦାନ କରାଯିବା ସହ ଅନେକ ବୃହତ୍ କମ୍ପାନୀକୁ କାରଖାନା ପାଇଁ ଅନୁମତି ଦିଆଯାଇଥିବା ଯୋଗୁ ରାଜ୍ୟରେ ଜଳ ସଂପଦ ଉପରେ ଏହାର ଯଥେଷ୍ଟ କୁପ୍ରଭାବ ପଡ଼ିବା ସମ୍ଭାବନା ଦେଖାଯାଉଛି । ଯେଉଁ ଯେଉଁ ଅଞ୍ଚଳରେ ଶିଳ୍ପ କାରଖାନା ପ୍ରତିଷ୍ଠା ହୁଏ ସେହି ଅଞ୍ଚଳରେ ସାଧାରଣତଃ ଜଳସ୍ତର ବହୁ ନିମ୍ନକୁ ଚାଲିଯାଏ । ବେଆଇନ କୋଇଲା ଖଣି ଖନନ ଯୋଗୁ ମଧ୍ୟ କେତେକ ଜିଲ୍ଲାରେ ଜଳର ଗଭୀରତା ହ୍ରାସ ପାଉଛି । ଝାରସୁଗୁଡ଼ା ଜିଲ୍ଲାର ବେଲପାହାଡ଼ ଅଞ୍ଚଳରେ ବ୍ୟାପକ କୋଇଲା ଖଣି ଖନନ ଯୋଗୁ ଜଳସ୍ତର ୫ମିଟର ଗଭୀରକୁ ଯାଇଥିବା ଜଣାଯାଇଛି । ଝାରସୁଗୁଡ଼ା, ତାଳଚେର, ବେଲପାହାଡ଼, ସୁଗୁଡ଼ା, ଇବଭ୍ୟାଲି ଇତ୍ୟାଦି ଅଞ୍ଚଳରେ କୋଇଲା ଖଣି ଖନନ ଯୋଗୁ ଜଳସ୍ତର ବ୍ୟାପକ ହ୍ରାସ ପାଇଛି ।

ଇବ୍ ନଦୀକୂଳର ଓରିଏଣ୍ଟ ପେପର୍‌ମିଲ, ମହାନଦୀ କୂଳର ଜିନ୍ଦଲ ଆଲୁମିନା, ଶଙ୍ଖ, କୋଏଲ୍ ନଦୀ ନିକଟସ୍ଥ ରାଉରକେଲା ଇସ୍‌ପାତ କାରଖାନା, ତଥା ମହାନଦୀ କୂଳରେ ପ୍ରତିଷ୍ଠିତ ଅନେକ ଛୋଟ ବଡ଼ କାରଖାନା ଯୋଗୁ ନଦୀଜଳ ବିଷାକ୍ତ ହେବା ସହ ପାରିପାର୍ଶ୍ୱିକ ଅଞ୍ଚଳର ଭୂଗର୍ଭସ୍ଥ ଜଳ ନଷ୍ଟ ହୋଇଯାଉଛି । ରାଜ୍ୟରେ ୧୫୦ରୁ ଅଧିକ ସ୍ପଞ୍ଜ ଲୁହାକାରଖାନା ପ୍ରତିଷ୍ଠା ହୋଇଥିବାରୁ ଶିଳ୍ପ ପ୍ରତିଷ୍ଠାସ୍ଥଳ ଦେଇ ଯାଇଥିବା ସମସ୍ତ ନଦୀର ଜଳ ବିଷାକ୍ତ ହେଉଛି ।

ରାୟଗଡ଼ାର ଆମ୍ବଦଳା, ଜଗଦଳପୁର, ଭୈରବଗଡ଼ ଇତ୍ୟାଦି ସ୍ଥାନରେ ଚାରିଟି ଗ୍ରାଫାଇଟ୍ କାରଖାନା ପ୍ରତିଷ୍ଠା କରାଯାଇଛି । ସେଥିରୁ ବାହାରୁଥିବା ଦୂଷିତ ଜଳ ଓ କଳାମାଟି ସିଧା ବଂଶଧାରାକୁ ଛାଡ଼ି ଦିଆଯାଉଛି । ବଂଶଧାରା ନଦୀଜଳକୁ ଆମ୍ବଦଳାଠାରୁ ଆନ୍ଧ୍ରପ୍ରଦେଶ ଯାଏ ମନୁଷ୍ୟ ଓ ଜୀବଜନ୍ତୁ ବ୍ୟବହାର କରିଥାନ୍ତି । ଗ୍ରାଫାଇଟ୍‌ରୁ ନିର୍ଗତ ବର୍ଜ୍ୟବସ୍ତୁ ମିଶ୍ରିତ ଜଳ ଗଭୀର ଜଳ ଉପରେ ଅନେକ ବିପଦ ସୃଷ୍ଟିକାରୀ ପ୍ରଭାବ ପକାଇଥାଏ ।

ଢ଼େଙ୍କାନାଳ ଜିଲ୍ଲାରେ ବ୍ରାହ୍ମଣୀ ନଦୀଜଳରେ ଶ୍ରୀ ମେଟାଲିକ ଓ ଶ୍ରୀ ଗଣେଶ ସ୍ପଞ୍ଜ ଆଇରନ୍‌ରୁ ବିପୁଳ ପରିମାଣର ବିଷାକ୍ତ ପଦାର୍ଥ ମିଶିଥାଏ । ଏହି ନଦୀଜଳକୁ ୫୦ରୁ ଅଧିକ ଗ୍ରାମର ଲୋକମାନେ ବ୍ୟବହାର କରୁଥିବାରୁ ଏହି ଜଳ ଯୋଗୁ ଅନେକ ମାରାତ୍ମକ ରୋଗ ସୃଷ୍ଟି ହୋଇଥାଏ । ଏହି କାରଖାନା ନିକଟରେ ଯାଉଥିବା ନନ୍ଦିରା ନାଳରେ କାରଖାନାର ବିଷାକ୍ତ ଜଳ ମିଶି ଶେଷରେ ତାହା ବ୍ରାହ୍ମଣୀରେ ମିଶିଥାଏ ।

ସେହିପରି ସମ୍ବଲପୁର ସହରର ପର୍ଯ୍ୟାପ୍ତ ଆବର୍ଜନାଯୁକ୍ତ ପାଣି ମହାନଦୀରେ ମିଶୁଥିବାରୁ ମହାନଦୀ ଜଳ ବିଷାକ୍ତ ହେଉଛି ।

ଓଡ଼ିଶାର ଭୌଗୋଳିକ କ୍ଷେତ୍ରଫଳ ୧,୫୫,୭୦୭ ବର୍ଗ କିମି ହୋଇଥିବା ବେଳେ ଏଠାରେ ବାର୍ଷିକ ୧୪୮୨ ମିମି ବର୍ଷା ହୋଇଥାଏ । ଓଡ଼ିଶାରେ ଭୂତଳ ଜଳ ପରିମାଣରୁ ୨୦୧କୋଟି ଘନମିଟର ଜଳ ବ୍ୟବହୃତ ହେଉଛି । ଭୂଗର୍ଭରେ ଥିବା ଜଳ ପରିମାଣ ୨୫୦୦ କୋଟି ଘ.ମି. ବୋଲି ସର୍ଭେରୁ ଜଣାଯାଇଛି । ମାତ୍ର ରାଜ୍ୟରେ ବ୍ୟାପକ ଜଙ୍ଗଲକ୍ଷୟ, ଦ୍ରୁତ ଶିଳ୍ପାୟନ, ମୃତ୍ତିକା କ୍ଷୟ, ନଦୀଗୁଡିକ ପୋତି ହୋଇଯିବା ଯୋଗୁ ରାଜ୍ୟରେ ଜଳସ୍ତର ବର୍ଷକୁ ବର୍ଷ ହ୍ରାସ ପାଇବାରେ ଲାଗିଛି । ୧୯୪୭ ମସିହାରେ ରାଜ୍ୟରେ ଜଳସେଚିତ ଜମିର ପରିମାଣ ୧୭୭, ହଜାର ହେକ୍ଟର ଥିବା ବେଳେ ବର୍ତ୍ତମାନ ତାହା ଏକଲକ୍ଷ ହେକ୍ଟରକୁ କମି ଆସିଛି ।

ରାଜ୍ୟରେ ଜନସଂଖ୍ୟାର ଦ୍ରୁତ ଅଭିବୃଦ୍ଧି ଏବଂ ବିଷାକ୍ତ ଜଳ ପରିମାଣ ବୃଦ୍ଧି ଯୋଗୁ ବିଶୁଦ୍ଧ ଜଳର ପରିମାଣ ହ୍ରାସ ପାଇବାରେ ଲାଗିଛି । ଅଧିକାଂଶ ନଦୀଜଳ ବିଷାକ୍ତ ହୋଇଯାଉଥିବା ବେଳେ ନଦୀ ନିକଟସ୍ଥ ସହରଗୁଡିକର ଦୂଷିତ ଓ ବର୍ଜ୍ୟବସ୍ତୁ ଯୋଗୁ ନଦୀଜଳ ଆଉ ବ୍ୟବହାର ଉପଯୋଗୀ ହୋଇପାରୁନାହିଁ । ଏଥିପାଇଁ ଓଡ଼ିଶାରେ ଏତେ ନଦନଦୀ ଥାଇ ମଧ ରାଜ୍ୟ ଖୁବ୍ କମ୍ ବର୍ଷ ମଧ୍ୟରେ ଭୟାନକ ଜଳ ସଂକଟ ଆଡ଼କୁ ଗତି କରୁଥିବା ବିଷୟ ସ୍ପଷ୍ଟ ହୋଇଛି ।

ରାଜ୍ୟରେ ଖଣିଜ ସଂପଦକୁ ଉପଭୋଗ କରିବା ପାଇଁ ଅନେକ କମ୍ପାନୀ ଓଡ଼ିଶାରେ ଶିଳ୍ପ ପ୍ରତିଷ୍ଠା କରିବା ନିମନ୍ତେ ଆଗେଇ ଆସୁଛନ୍ତି । ବିଶ୍ୱର ସବୁଠାରୁ ଅଧିକ ଗୁଣବତ୍ତା ସଂପନ୍ନ ବକ୍‌ସାଇଟ ଓଡ଼ିଶାରେ ଥିବାରୁ ଅନେକ କମ୍ପାନୀ ଏଠାକୁ ଆସିବାରେ ଲାଗିଛନ୍ତି ଏବଂ ଶିଳ୍ପ ପ୍ରତିଷ୍ଠା କରୁଛନ୍ତି । ବକ୍‌ସାଇଟ୍‌ରୁ ଏକ ଟନ ଆଲୁମିନା ପ୍ରସ୍ତୁତ କରାଯିବା ବେଳେ ସମପରିମାଣରେ ରେଡ୍ ମଡ୍ ବାହାରି ଥାଏ ଯାହା ଅତ୍ୟନ୍ତ ବିଷାକ୍ତ । ଆଲୁମିନିୟମ ପ୍ରସ୍ତୁତ ହେବା ବେଳେ ସ୍ମେଲ୍‌ଟର୍ ପ୍ଲାଣ୍ଟ୍‌ରୁ ବାୟୁମଣ୍ଡଳ ମଧ୍ୟରେ ପ୍ରଚୁର ଫ୍ଲୋରିଂ, ଆଲୁମିନିୟମ ଗୁଣ୍ଡ, ଫ୍ଲୋରାଇଡ୍ ଗୁଣ୍ଡ ଓ ଅଙ୍ଗାରକାମ୍ଳ ମିଶିଥାଏ । ଏସବୁ

ବର୍ଷା ପରିମାଣ ହ୍ରାସ କରିବାରେ ସହାୟକ ହେଉଥିବା ବେଳେ ସ୍ମେଲ୍‌ଟରରୁ ନିର୍ଗତ ଟେଟ୍ରୋଫ୍ଲୋରାଟେନ ନାମକ ବିଷାକ୍ତ ପଦାର୍ଥ ବାହାରି ବାୟୁମଣ୍ଡଳର ଉତ୍ତାପ ବୃଦ୍ଧି କରିଥାଏ ।

ବିଭିନ୍ନ ତଥ୍ୟରୁ ଜଣାଯାଏ ଯେ ମହାନଦୀ ଜଳରେ ଏନ୍‌ଟିପିସି, ଚୌଦ୍ୱାର କାଗଜ କଳ, ଓସୱାଲ ଇତ୍ୟାଦି କାରଖାନାର ବିଷାକ୍ତ ଜଳ ଏବଂ ସମ୍ବଲପୁର, ଝାରସୁଗୁଡ଼ା, କଟକ ଓ ସୋନ୍‌ପୁର ସହରର ଦୂଷିତ ଜଳ ମିଶୁଥିବା ବେଳେ ବଂଶଧାରା ନଦୀରେ ଆମ୍ବଦଳା, ଜଗଦଳପୁରରେ ଥିବା ଗ୍ରାଫାଇଟ କାରଖାନାରୁ ଦୂଷିତ ଜଳ ମିଶୁଛି ।

ସେହିପରି ବ୍ରାହ୍ମଣୀ ନଦୀରେ ଅନୁଗୁଳର ନାଲ୍‌କୋ, କଣିହାଁ, ଏନ୍‌ଟିପିସି, ତାଳଚେର କୋଇଲାଖଣି ଓ ସ୍ପଞ୍ଜ୍ ଲୁହାକାରଖାନାର ବିଷାକ୍ତ ଜଳ ମିଶୁଥିବା ବେଳେ ସୁବର୍ଣ୍ଣରେଖା ନଦୀରେ ମୟୁରଭଂଜର ୟୁରାନିୟମ ଖଣି ଓ ଜାମସେଦ୍‌ପୁର ଟାଟା କମ୍ପାନୀର ବିଷାକ୍ତ ଜଳ ମିଶୁଛି । ନାଗାବଳୀ ନଦୀରେ ରାୟଗଡ଼ାସ୍ଥିତ ଜେକେ କାଗଜ କଳ ଓ ସେବା କାଗଜ କଳର ବିଷାକ୍ତ ଜଳ, କାଠଯୋଡି ନଦୀରେ କଟକ ସହରର ୫୦ରୁ ଅଧିକ ଛୋଟ ବଡ କାରଖାନା ଓ ସହରର ଦୂଷିତ ଜଳ, ଇବ୍ ନଦୀରେ ବ୍ରଜରାଜନଗର ଓରିଏଣ୍ଟ ପେପର ମିଲର ବିଷାକ୍ତ ଜଳ, ଷଣ୍ଢେଇ ନଦୀରେ କେଉଁଝରସ୍ଥିତ ଖଣି ଓ ସ୍ପଞ୍ଜ କାରଖାନାର ବିଷାକ୍ତ ଜଳ ମିଶୁଛି । ଦକ୍ଷିଣରେ ଋଷିକୂଲ୍ୟା ନଦୀରେ ଆସିକା, କବିସୂର୍ଯ୍ୟନଗର, ଛତ୍ରପୁର ସହରର ବିଷାକ୍ତ ଜଳ ମିଶୁଛି ।

ଋଷିକୂଲ୍ୟା ନଦୀଜଳକୁ ଆଂଶିକ ଭାବେ କେତେକ ଘରୋଇ କମ୍ପାନୀ ହାତରେ ଟେକି ଦିଆଯାଇଥିବା ବେଳେ ଇନ୍ଦ୍ରାବତୀର ଅର୍ଦ୍ଧାଧିକ ଜଳ କେତେକ ଘରୋଇ କମ୍ପାନୀର ପୂର୍ଣ୍ଣ ମାଲିକାନାରେ ରହିଛି ।

ଭାରତରେ ୪୦୦ରୁ ଅଧିକ ବୃହତ ନଦୀବନ୍ଧ ପ୍ରତିଷ୍ଠା ହେଉଥିବା ବେଳେ ଓଡ଼ିଶାରେ ୭ଟି ବୃହତ ନଦୀବନ୍ଧ ରହିଛି । ନଦୀବନ୍ଧ ଯୋଗୁ ବିସ୍ଥାପିତ ହୋଇଥିବା ଲୋକଙ୍କ ମଧ୍ୟରୁ ୪୨ ପ୍ରତିଶତ ହେଉଛନ୍ତି ଆଦିବାସୀ । ବହୁଚର୍ଚ୍ଚିତ ହୀରାକୁଦ ନଦୀବନ୍ଧ ଯୋଜନା ଯୋଗୁ ପ୍ରାୟ ୨୫୦ଟି ଗ୍ରାମ କ୍ଷତିଗ୍ରସ୍ତ ହୋଇଥିବା ବେଳେ ପ୍ରାୟ ୨୪୦୦୦ ପରିବାର କ୍ଷତିଗ୍ରସ୍ତ ହୋଇଥିଲେ । ଅନେକ ନଦୀବନ୍ଧ ଯୋଜନା ଯେଉଁ ଲକ୍ଷ୍ୟରେ ପ୍ରତିଷ୍ଠା କରାଯାଇଥିଲା ସେଥିରୁ ଅନେକ ଯୋଜନା ଫସର ଫାଟିଛି ଏବଂ ଲକ୍ଷାଧିକ ପରିବାର ବାସଚ୍ୟୁତ ହୋଇଥିବା ବେଳେ ନଦୀବନ୍ଧ ଯୋଜନା ଲାଗି ଶହ ଶହ କୋଟି ଟଙ୍କା ବ୍ୟୟ କରାଯାଇଥିଲେ ମଧ୍ୟ ଏହାର ସଫଳ ରୂପାୟନ ହୋଇପାରିନାହିଁ ।

ରାଜ୍ୟରେ ଖଣି ଓ ଖାଦାନ ସହ ବିଶୁଦ୍ଧ ଓ ଉତ୍ତମ ପ୍ରକାର ଜଳର ଲୋଭ ସମ୍ବରଣ କରି ନପାରି ଅନେକ କମ୍ପାନୀ ଓଡ଼ିଶାରେ ତଥାକଥିତ ପୁଞ୍ଜିବିନିଯୋଗ କରୁଛନ୍ତି । ମାତ୍ର ଏହି ପୁଞ୍ଜି ବିନିଯୋଗର ବାସ୍ତବ ଉଦ୍ଦେଶ୍ୟ ହେଲା ମୁନାଫା ଅର୍ଜନ । ଅନ୍ୟ ରାଜ୍ୟଗୁଡିକରେ ପ୍ରାକୃତିକ ସଂପଦବହୁଳ ଇଲାକାରେ ଜଳର ସୁଯୋଗ ନଥିବାରୁ ଅନେକ କମ୍ପାନୀ ଓଡ଼ିଶାକୁ ହିଁ ପ୍ରାଥମିକତା ପ୍ରଦାନ କରୁଛନ୍ତି । ଭାରତର ପ୍ରମୁଖ ବହୁରାଷ୍ଟ୍ରୀୟ କମ୍ପାନୀଗୁଡିକ ସମେତ ବିଦେଶର ବହୁ ରାଷ୍ଟ୍ରୀୟ କମ୍ପାନୀ ରାଜ୍ୟ ସରକାରକୁ ହାତକରି ଶିଳ୍ପ ପ୍ରତିଷ୍ଠା କରିବାକୁ ଆଗେଇ ଆସିଛନ୍ତି ।

ପୁଞ୍ଜିପତି ଓ ଶିଳ୍ପପତିମାନେ ଯେଉଁ ହାରରେ ରାଜ୍ୟରେ ଜଳସଂପଦକୁ ଉପଯୋଗ କରୁଛନ୍ତି ତାହା ଯଦି ସେହି ହାରରେ ଚାଲେ ତେବେ ୨୫ବର୍ଷ ମଧ୍ୟରେ ଓଡ଼ିଶାର ଜଳ ସମ୍ପୂର୍ଣ୍ଣ ବିଷାକ୍ତ ହୋଇଯିବ । ଆଲୁମିନିୟମ ଶିଳ୍ପ ପ୍ରତିଷ୍ଠା ସ୍ଥଳରେ ପ୍ରଭୂତ ଜଳ ବ୍ୟବହାର ହେଉଥିବା ବେଳେ ଏଥିରୁ ନିର୍ଗତ ବିଷାକ୍ତ ପଦାର୍ଥ ଖଣ୍ଡମଣ୍ଡଳକୁ ବିଷାକ୍ତ କରିଦେଉଥିବାରୁ ଅନେକ ଆଶଙ୍କା ସୃଷ୍ଟି ହେଉଛି ।

ଜଳର ନିନାଦ ଓ ମଧୁର ମୂର୍ଚ୍ଛନା ତାଳେ ତାଳେ ଓଡ଼ିଶାର କୃଷକ ମୁଖରେ ହସ ଫୁଟିବାର ଦୃଶ୍ୟ ଆଉ ଦେଖିବାକୁ ମିଳୁନାହିଁ ବରଂ ଓଡ଼ିଶାର ଜଳ ସଂପଦକୁ ଉପଯୋଗ କରି ମୁନାଫା ଅର୍ଜନ କରୁଥିବା ଶିଳ୍ପପତିମାନଙ୍କ କ୍ରୂର ହସ ହିଁ ଶୁଣିବାକୁ ମିଳୁଛି ।



# ଜଳ ପ୍ରଦୂଷଣ

ବ୍ୟବହାର୍ଯ୍ୟ ଜଳର ପରିମାଣ ଦିନକୁ ଦିନ କମୁଥିବା ସହ ଜନସଂଖ୍ୟା ଓ ବସତି ସଂଖ୍ୟା ବୃଦ୍ଧି ପାଉଥିବା ଯୋଗୁ ଜଳ ପ୍ରଦୂଷଣ ବୃଦ୍ଧି ପାଉଛି । ବିଶେଷକରି ଶିଳ୍ପ ସଂଖ୍ୟାର ଦ୍ରୁତ ଅଭିବୃଦ୍ଧି ଯୋଗୁ ଏହାର ପ୍ରତିକୂଳ ପ୍ରଭାବ ଜଳ ସଂପଦ ଉପରେ ପଡୁଛି ।

ଜଳ ହେଉଛି ଜୀବନର ଏକ ମାଧ୍ୟମ । ପ୍ରତ୍ୟେକ ଜୀବର ଦେହରେ ୮୫ରୁ ୯୦ଭାଗ ଜଳ ହିଁ ଥାଏ । ଦୈନନ୍ଦିନ ଜୀବନରେ ଜଳର ଆବଶ୍ୟକତା ଯେତେ ଅଧିକ ବୃଦ୍ଧି ପାଉଛି ଶିଳ୍ପ ସଭ୍ୟତା ମଧ୍ୟ ସେତେ ପରିମାଣର ଅଧିକ ଜଳ ଆବଶ୍ୟକ କରୁଛି ।

ମୁଖ୍ୟତଃ ସମୁଦ୍ର, ବର୍ଷା, ଭୂଗର୍ଭ ଓ ଭୂପୃଷ୍ଠରୁ ଜଳ ସଂଗୃହୀତ ହୋଇଥାଏ । କେବଳ ଭାରତରେ ନୁହେଁ ସମଗ୍ର ପୃଥିବୀରେ ଜଳର ପରିମାଣ କମିଯାଉଥିବାରୁ ଜଳ ପାଇଁ ସୃଷ୍ଟି ହେଉଥିବା ସଂଘର୍ଷ ସବୁଠାରେ ଦେଖାଯାଉଛି ।

ଜଳର ପବିତ୍ରତା ପ୍ରତି ଧ୍ୟାନ ଦିଆଯାଉ ନଥିବାବେଳେ ଦିନକୁ ଦିନ ଜଳ ପ୍ରଦୂଷଣ ବୃଦ୍ଧି ପାଇବାରେ ଲାଗିଛି । ବିଭିନ୍ନ ରାସାୟନିକ ଦୂଷିତ ପଦାର୍ଥ, ଜୀବଜନ୍ତୁ ମଳ, ବିଷାକ୍ତ ସାର, ଶିଳ୍ପ କାରଖାନାରୁ ବାହାରୁଥିବା ବର୍ଜ୍ୟବସ୍ତୁ, ଏସିଡ୍ ବର୍ଷା, ପାରଦ, ଲୌହ, କ୍ୟାଡ୍‌ମିୟମ, ଆର୍ସେନିକ ଧାତୁ, ଖୋଲା ଖଣି, ତେଜଷ୍କ୍ରିୟତା ଇତ୍ୟାଦି କାରଣ ଯୋଗୁ ଜଳ ପ୍ରଦୂଷଣ ଦ୍ରୁତ ଗତିରେ ବୃଦ୍ଧି ପାଉଛି ।

ସ୍ୱଚ୍ଛ ଜଳରେ ନାଳ ନର୍ଦ୍ଦମା ପାଣି ଓ ରାସାୟନିକ ବର୍ଜ୍ୟବସ୍ତୁ ମିଶିବା ଦ୍ୱାରା ଜଳ ଚିରଦିନ ପାଇଁ ନଷ୍ଟ ହୋଇଯାଇଥାଏ । ଏହି ପଦାର୍ଥଗୁଡିକ ସାଧାରଣତଃ ଜଳରେ ଥିବା ଅମ୍ଳଜାନକୁ ନଷ୍ଟ କରିଦେବାରେ ସହାୟକ ହୋଇଥାଏ । ଫଳରେ ଜଳ ବ୍ୟବହାର ଉପଯୋଗୀ ହୋଇପାରିନଥାଏ । ସେହିପରି କୃଷି କାର୍ଯ୍ୟରେ ପର୍ଯ୍ୟାପ୍ତ ପରିମାଣର ରାସାୟନିକ ସାର ପଦାର୍ଥର ଅପପ୍ରୟୋଗ ହେତୁ ଏହି ଜଳ ଖାଦ୍ୟ ଶୃଙ୍ଖଳାକୁ ଭଂଗ କରେ ଏବଂ ଜଳକୁ ବ୍ୟବହାର ଉପଯୋଗୀ କରିପାରିନଥାଏ । ଅପରପକ୍ଷେ ଦେଶରେ ପ୍ରତିଷ୍ଠା

କରାଯାଉଥିବା ଆଣବିକ ରିଆକ୍ଟର, ବିଦ୍ୟୁତ ଉତ୍ପାଦନକାରୀ ପ୍ଲାଣ୍ଟ, ଇସ୍‌ପାତ କାରଖାନା, ତୈଳ ବିଶୋଧନାଗାର ଇତ୍ୟାଦି ଯୋଗୁ ପର୍ଯ୍ୟାପ୍ତ ପରିମାଣର ପ୍ରାକୃତିକ ଜଳ ନଷ୍ଟ ହୋଇଯାଇ ସମୁଦ୍ରରେ ପଡିଥାଏ ବା ସ୍ଥାନୀୟ ଅଞ୍ଚଳରେ ଭେଦିଯାଉଥିବାରୁ ବୃହତ୍ ଅଞ୍ଚଳ ବନ୍ଧ୍ୟା ହୋଇଯାଇଥାଏ । ଅନେକ ସମୟରେ ଅସାବଧାନତା କାରଣରୁ ତୈଳ ନିର୍ଗତ ହୋଇ ଶହଶହ କୋଟି ଘନଫୁଟ ଜଳ ବ୍ୟବହାର ଉପଯୋଗୀ ହୋଇପାରି ନଥାଏ । ବାୟୁମଣ୍ଡଳରେ ଥିବା ସଲଫ୍ୟୁରିକ ଏସିଡ୍, ନାଇଟ୍ରିକ ଏସିଡ୍ ଇତ୍ୟାଦିର ବର୍ଷା ଯୋଗୁ ସାଧାରଣ ଜଳରେ ଥିବା ଉଦଜାନ ଅଣୁ ପରିମାପକ ନଷ୍ଟ ହୋଇଯାଇଥାଏ । ଯାହା ଫଳରେ ସମୁଦାୟ ଜୀବଜଗତ ଉପରେ ଏହାର ପ୍ରଭାବ ପଡିଥାଏ । ସେହିପରି ଲୌହ, ପାରଦ, କ୍ୟାଡ୍‌ମିୟମ, ଆର୍ସେନିକ୍ ଇତ୍ୟାଦି ଧାତୁ ସମେତ ତେଜସ୍କ୍ରିୟ ପଦାର୍ଥଗୁଡିକର ବ୍ୟାପକତା ଯୋଗୁ ଜଳର ପ୍ରଭୂତ କ୍ଷତି ମଧ୍ୟ ଘଟିଥାଏ ।

ବିଭିନ୍ନ ବିଷାକ୍ତ ପ୍ରକ୍ରିୟା ଯୋଗୁ ଜଳର ଅମ୍ଳଜାନ ଧାରଣ କ୍ଷମତା ହ୍ରାସ ପାଇଥିବା ବେଳେ ଜଳଚର ଜୀବମାନେ ମୃତ୍ୟୁମୁଖରେ ପଡିଥାନ୍ତି । ରାସାୟନିକ ପଦାର୍ଥ, ବିଷାକ୍ତ ଧାତବ ପଦାର୍ଥ ମିଶ୍ରିତ ଜଳ ବ୍ୟବହାର କରାଗଲେ ଏହାର ପ୍ରଭାବ ସ୍ନାୟୁ ବ୍ୟବସ୍ଥା, ଦୃଷ୍ଟିଶକ୍ତି, ରକ୍ତ, ଯକୃତ୍, ଫୁସ୍‌ଫୁସ୍ ଉପରେ ପଡିଥାଏ । କ୍ରୋମିୟମ୍ ଧାତୁ ପ୍ରଦୂଷିତ ଜଳର ପ୍ରଭାବ ସାଧାରଣତଃ ଶ୍ୱାସ ନଳୀରେ ଆଘାତ ପହଞ୍ଚାଇଥାଏ ଯାହା ପରବର୍ତ୍ତୀ ପର୍ଯ୍ୟାୟରେ କର୍କଟ ରୋଗର କାରଣ ହୋଇଥାଏ । ଲୌହ ମିଶ୍ରିତ ଜଳ ସ୍ନାୟବିକ ଦୁର୍ବଳତା, ରକ୍ତହୀନତା ଇତ୍ୟାଦି ରୋଗ ସୃଷ୍ଟି କରିଥାଏ ।

ଅନେକ ଶିଳ୍ପ ସଂସ୍ଥାର ପରିସରଭୁକ୍ତ ଅଞ୍ଚଳରେ ଥିବା ଜଳ ସଂପୂର୍ଣ୍ଣ ବିଷାକ୍ତ ହୋଇ ପଡିଥାଏ । ଏପରିକି କାରଖାନା ପରିସରଭୁକ୍ତ କୂପରୁ ଜଳ ପିଇଲେ ହାଡ଼ ଉପରେ କୁପ୍ରଭାବ ପଡିଥାଏ । ଏଥିପାଇଁ କମ୍ପାନୀଗୁଡିକ ସାଧାରଣତଃ ପ୍ରଚୁର ଅର୍ଥ ବିନିମୟରେ ୧୫୦ କିମି ଦୂରରୁ ଜଳ ଆଣିବାକୁ ବାଧ୍ୟ ହୋଇଥାନ୍ତି ।

ଜଳ ପରି ଏକ ଜୀବନରକ୍ଷକ ଦ୍ରବ୍ୟର ସୁରକ୍ଷା ପ୍ରତି ସରକାରଗୁଡିକ ସାଧାରଣତଃ ଧ୍ୟାନ ଦେଇନଥାନ୍ତି । ତାହାରି ଫଳରେ କୋଟି କୋଟି ଟଙ୍କାର ଜୀବନ ପ୍ରତିବର୍ଷ ହାନୀ ହୋଇଥାଏ । ଜଳପରି ପ୍ରକୃତିର ଏକ ମହାନ ସଂପଦ ଯେପରି ବିଷାକ୍ତ ହେବ ନାହିଁ ସେଥିପାଇଁ ସମସ୍ତେ ଧ୍ୟାନଦେବା ଆବଶ୍ୟକ ।



# ଅଭିଶପ୍ତ ଶୈଶବ:
# ଜଳ ଅଧିକାରରୁ ବଞ୍ଚିତ

ପୃଥିବୀରେ ଅନେକ ଯୋଜନା କାର୍ଯ୍ୟକାରୀ କରାଯାଉଥିଲେ ମଧ୍ୟ ଶିଶୁମାନଙ୍କ ବିକାଶର ଧାରା ଯଥେଷ୍ଟ ବାଧାପ୍ରାପ୍ତ ହୋଇ ଆସିଛି । ସେମାନଙ୍କ ଶିକ୍ଷା, ସ୍ୱାସ୍ଥ୍ୟ, ବାସ ଦୂରେ ଥାଉ ସେମାନଙ୍କୁ ସ୍ୱଚ୍ଛ ପାନୀୟ ଜଳ ମଧ୍ୟ ଯୋଗାଇ ଦିଆନଯିବା ଅତ୍ୟନ୍ତ ପରିତାପର ବିଷୟ । ପୃଥିବୀରେ ଶିଶୁମାନଙ୍କ ସଂଖ୍ୟା ୨୪୦ କୋଟି ହୋଇଥିବା ବେଳେ କେବଳ ବିକାଶଶୀଳ ଓ ଅନୁନ୍ନତ ରାଷ୍ଟ୍ରରେ ଥିବା ଶିଶୁଙ୍କ ସଂଖ୍ୟା ହେଉଛି ୨୦୦ କୋଟି । ଏହି ଶିଶୁଙ୍କ ମଧ୍ୟରୁ ଦାରିଦ୍ର୍ୟର କଷାଘାତ ମଧ୍ୟରେ ରହିଥିବା ଶିଶୁଙ୍କ ସଂଖ୍ୟା ପ୍ରାୟ ୧୫୦ କୋଟି ହେବ । ବିକାଶଶୀଳ ରାଷ୍ଟ୍ରଗୁଡ଼ିକର ପ୍ରାୟ ୭୦କୋଟି ଶିଶୁ ବିଶୁଦ୍ଧ ପାନୀୟ ଜଳରୁ ବଞ୍ଚିତ ହେଉଥିବା ବେଳେ ପ୍ରାୟ ୪୦କୋଟି ଶିଶୁ ସ୍ୱାସ୍ଥ୍ୟ ସେବା ପାଇବାରୁ ବଞ୍ଚିତ । ବିଶ୍ୱର ପ୍ରାୟ ୫୦କୋଟି ଶିଶୁ ସ୍କୁଲ ଦ୍ୱାର ମାଡ଼ି ନଥିବା ବେଳେ ୩୦ପ୍ରତିଶତ ଶିଶୁ ଜନ୍ମ ସମୟରେ ପୁଷ୍ଟିକର ଖାଦ୍ୟରୁ ବଞ୍ଚିତ ହୋଇଥାନ୍ତି । ଏସିଆ, ଆଫ୍ରିକାରେ ୩୭% ଶିଶୁ ଆବଶ୍ୟକୀୟ ଓଜନଠାରୁ କମ ଓଜନର ହୋଇଥାନ୍ତି ।

ଆଫ୍ରିକୀୟ ଓ ଉପସାଗରୀୟ ଅଞ୍ଚଳରେ ଶିଶୁମାନଙ୍କ ମଧ୍ୟରୁ ୮୫ ଭାଗ ଶିଶୁ ବିଶୁଦ୍ଧ ପାନୀୟ ଜଳରୁ ବଞ୍ଚିତ ହୋଇଥାନ୍ତି । ଶିଶୁମାନଙ୍କ ବିକାଶ ନିମନ୍ତେ ଜଳର ଘୋର ଆବଶ୍ୟକତା ଥିବା ସତ୍ତ୍ୱେ ଏଥିପ୍ରତି ଧ୍ୟାନ ଦିଆଯାଉନାହିଁ । ଶିଶୁମାନଙ୍କୁ ଯୁଦ୍ଧ କ୍ଷେତ୍ରରେ ବ୍ୟବହାର କରାଯାଉଥିବା ସତ୍ତ୍ୱେ ସେମାନଙ୍କ ସ୍ୱାସ୍ଥ୍ୟ, ତୃଷ୍ଣା ପ୍ରତି ମଧ୍ୟ ସମରପ୍ରିୟମାନେ ଧ୍ୟାନ ଦେବା ଦେଖାଯାଇନଥାଏ ।

ଶିଶୁମାନଙ୍କର ଉପଯୁକ୍ତ ଚିକିତ୍ସାର ଅଭାବ, ଜଳ ଅଧିକାର ପ୍ରଦାନ ନ କରିବା କ୍ଷେତ୍ରରେ ଦାରିଦ୍ର୍ୟ ହିଁ ପ୍ରମୁଖ କାରଣ । ସେମାନଙ୍କ ମାନସିକ ଓ ଶାରୀରିକ ବିକାଶ ପ୍ରତି ରାଷ୍ଟ୍ର ଧ୍ୟାନ ନ ଦେବା ସହ ପରିବାରଗୁଡ଼ିକ ଯେପରି ସ୍ୱଚ୍ଛ ଜଳ ପାଇପାରିବେ ସେଥିପ୍ରତି

ଧ୍ୟାନ ଦିଆ ନଯିବାରୁ ବାର୍ଷିକ ଶହ ଶହ କୋଟି ଡ଼ଲାର ମୂଲ୍ୟର ମାନବ ଶକ୍ତି ନଷ୍ଟ ହେଉଛି । ଅତି ନିମ୍ନ ବିକଶିତ ଦେଶଗୁଡିକରେ ଜନ୍ମ ନେଉଥିବା ପ୍ରତି ୬ଜଣ ଶିଶୁଙ୍କ ମଧ୍ୟରୁ ଜଣେ ଶିଶୁ ପାନୀୟ ଜଳ, ଉପଯୁକ୍ତ ଯତ୍ନ, ଖାଦ୍ୟାଭାବରୁ ବଞ୍ଚିତ ହୋଇ ପ୍ରାଣତ୍ୟାଗ କରୁଥିବା ବେଳେ ବିକଶିତ ରାଷ୍ଟ୍ରଗୁଡିକରେ ଏହି ହାର ୧୬୭:୧ । ସେହିପରି ବିଶୁଦ୍ଧ ଜଳ ଅଭାବରୁ ୪୭ ପ୍ରତିଶତ ଶିଶୁ ବିଭିନ୍ନ ରୋଗର ଶିକାର ହୋଇଥାନ୍ତି ଏବଂ ଏହାର ପ୍ରଭାବ ସେମାନଙ୍କର ସ୍ୱାସ୍ଥ୍ୟ ଉପରେ ପଡିଥାଏ ।

ଭାରତର ୬୦ପ୍ରତିଶତ ବିଦ୍ୟାଳୟରେ ମିଳୁଥିବା ଜଳ ଜୀବାଣୁ ମୁକ୍ତ ନୁହେଁ । ଅଧିକାଂଶ ବିଦ୍ୟାଳୟରେ ଏକ ବିଶୁଦ୍ଧ କୂପ ରହିବା ମଧ୍ୟ ସମ୍ଭବ ହୋଇପାରିନାହିଁ । ଏପରି ଯୋଗୁ ଶିଶୁମାନେ ବିଦ୍ୟାଳୟରେ ଶିକ୍ଷାରତ ସମୟରେ ମଧ୍ୟ ନାନା ପ୍ରକାର ରୋଗର ଶିକାର ହୋଇଥାନ୍ତି ।

ଉପସାହାରୀୟ ଆଫ୍ରିକା ଯଥା- ଆଂଗୋଲା, ବେନିନ୍, ବୋସ୍ୱାନା, ବୁର୍କିନା ଫାସୋ, ଲାଇବେରିଆ, ସିଆରା ଲୋନ, ମାଡ଼ଗାସ୍କର, ଜିମ୍ବାୱେ, ଟୋଗୋ, ଉଗାଣ୍ଡା, ମାଳି, ମାଉରିତାନିଆ, କଂଗୋ, ସେନେଗଲ, ସିଚେଲସ, ଜାମ୍ବିଆ, ଚାଦ୍ ପ୍ରଭୃତି ରାଷ୍ଟ୍ରରେ ମାତ୍ର ୪୩ ପ୍ରତିଶତ ଶିଶୁ ଜଳ ପାଉଥିବା ବେଳେ ୩୫ ପ୍ରତିଶତ ଶିଶୁ ଉତ୍ତମ ପରିବେଶ ପାଇଥାନ୍ତି । ଦକ୍ଷିଣ ଏସିଆ ଯଥା- ଆଫ୍‌ଗାନିସ୍ତାନ, ବାଂଲାଦେଶ, ଭୁଟାନ, ଭାରତ, ମାଲଡ୍ରେଭିସ, ନେପାଳ, ପାକିସ୍ଥାନ ଓ ଶ୍ରୀଲଙ୍କାରେ ମାତ୍ର ୧୮ପ୍ରତିଶତ ଶିଶୁ ବିଶୁଦ୍ଧ ଜଳ ପାଉଛନ୍ତି । ତେବେ ୬୧ପ୍ରତିଶତ ଶିଶୁ ନିର୍ମଳ ପରିବେଶର ସୁଯୋଗ ପାଇନଥାନ୍ତି । ମଧ୍ୟ ପ୍ରାଚ୍ୟ ଓ ଉତ୍ତର ଆଫ୍ରିକା ଯଥା- ଆଲ୍‌ଜେରିଆ, ବାହାରିନ୍, ଇରାନ୍, ଇଜିପ୍ଟ, ଇରାକ୍, ଜୋର୍ଡ଼ାନ୍, ଲେବାନନ୍, ଲିବ୍ୟା, ଓମାନ୍, କାତାର୍, ସାଉଦିଆରବ, ସୁଦାନ୍, ସିରିୟା, ଏମିରେଟ୍‌ସ୍, ୟେମେନ୍ ପ୍ରଭୃତି ରାଷ୍ଟ୍ରରେ ୨୧ ପ୍ରତିଶତ ଶିଶୁ ଜଳ ପାଉଥିବା ବେଳେ ମାତ୍ର ୨୫ପ୍ରତିଶତ ଶିଶୁ ନିର୍ମଳ ପରିବେଶରେ ବଢ଼ିଥାନ୍ତି ।

ଜାପାନ, ଆମେରିକା, ଅଷ୍ଟ୍ରେଲିଆ, କାନାଡ଼ା, ବ୍ରିଟେନ୍, ଇଟାଲୀ, ଫ୍ରାନ୍‌ସ୍, ଇସ୍ରାଏଲ୍, ସ୍ପେନ୍, ସୁଇଜରଲାଣ୍ଡ, ପୋଲାଣ୍ଡ, ନରୱେ, ଆୟାର୍‌ଲାଣ୍ଡ, ଆଇସ୍‌ଲାଣ୍ଡ, ଡ଼େନ୍‌ମାର୍କ, ଜର୍ମାନୀ, ସୁଇଡ଼େନ୍, ଲାଟଭିଆ, ନେଦରଲ୍ୟାଣ୍ଡ, ଅଷ୍ଟ୍ରିଆ, ବେଲଜିୟମ, ଲିଥୁଆନିଆ, ଗ୍ରୀସ୍ ଇତ୍ୟାଦି ଶିଳ୍ପୋନ୍ନତ ରାଷ୍ଟ୍ରରେ ୪୮ ପ୍ରତିଶତ ଶିଶୁ ବିଶୁଦ୍ଧ ଜଳ ପାଉଥିବା ବେଳେ ୬୮ ପ୍ରତିଶତ ଶିଶୁ ଉତ୍ତମ ପରିବେଶ ପାଇଥାନ୍ତି ।

ଏହାର ଏକ ତୁଳନାତ୍ମକ ଚିତ୍ର ଏଠାରେ ପ୍ରଦାନ କରାଯାଇଛି (%ରେ)

| | ଜଳ | ପରିମଳ | ଶିକ୍ଷା | ସ୍ୱାସ୍ଥ୍ୟ | ପୁଷ୍ଟିକର ଖାଦ୍ୟ |
|---|---|---|---|---|---|
| ଉପସାହାରୀୟ ଆଫ୍ରିକା | ୫୩ | ୩୫ | ୨୯ | ୨୪ | ୧୮ |
| ଦକ୍ଷିଣ ଆଫ୍ରିକା | ୧୮ | ୬୧ | ୧୯ | ୨୩ | ୨୩ |
| ମଧ୍ୟ ପ୍ରାଚ୍ୟ ଓ ଉତ୍ତର ଆଫ୍ରିକା | ୨୧ | ୨୫ | ୨୧ | ୧୬ | ୧୪ |
| ଲାଟିନ ଆମେରିକା ଓ କାରିବିୟାନ ରାଷ୍ଟ୍ର | ୭ | ୧୬ | ୩ | ୭ | ୫ |
| କେନ୍ଦ୍ର ଓ ପଶ୍ଚିମ ଏସିଆ | ୧୪ | ୧ | ୬ | ୨ | ୭ |
| ପୂର୍ବ ଏସିଆ ଓ ପ୍ରଶାନ୍ତ ମହାସାଗରୀୟ ଅଞ୍ଚଳ | ୧୩ | ୧୦ | ୩ | ୫ | ୧୨ |
| ଶିକ୍ଷୋନ୍ନତ ରାଷ୍ଟ୍ର | ୪୮ | ୬୮ | ୫୭ | ୬୨ | ୭୨ |

□□□

# ବିପଦଗ୍ରସ୍ତ ଧରଣୀର ଦୁର୍ଭାଗ୍ୟ

ପୃଥିବୀର ଜଳ ସଂପଦ ପ୍ରତି ଘନ ବିପଦ ମାଡ଼ି ଆସୁଥିବା ବେଳେ ସମୁଦ୍ର, ସାଗର, ନଦୀ, ହ୍ରଦ ଇତ୍ୟାଦିର ରହୁଥିବା ଜଳଚର ଜୀବଙ୍କ ଅବସ୍ଥା ମଧ୍ୟ ଶୋଚନୀୟ ହୋଇଛି । ଜଳରେ ବିଷାକ୍ତ ଦ୍ରବ୍ୟ ପରିମାଣ ବୃଦ୍ଧି ହେତୁ ଜଳରେ ବସବାସ କରୁଥିବା ଜୀବମାନଙ୍କ ସଂଖ୍ୟା କ୍ରମବର୍ଦ୍ଧମାନ ଭାବେ ହ୍ରାସ ପାଇବାରେ ଲାଗିଛି । ସେହିପରି ବିଲୁପ୍ତ ହୋଇଯାଉଥିବା ଜଳଚର ଜୀବଙ୍କ ସଂଖ୍ୟା ୩୦ପ୍ରତିଶତ ହୋଇଛି । ଏହାର କାରଣ ଜଳରେ ବିଷାକ୍ତ ଦ୍ରବ୍ୟ ମିଶ୍ରଣ, ଉତ୍ତାପ ବୃଦ୍ଧି, ଅମ୍ଳଜାନ ପରିମାଣ ହ୍ରାସ, ଗଭୀରତା ହ୍ରାସ, ତେଜଷ୍କ୍ରିୟ ପଦାର୍ଥର ବିକିରଣ ଏବଂ ଜଳରେ ରାସାୟନିକ ପଦାର୍ଥର ସମ୍ମିଶ୍ରଣ ।

ପୃଥିବୀର ପ୍ରାୟ ୧୦ ହଜାର ବୃହତ୍ ନଦୀ ମଧ୍ୟରୁ ୮୦ଭାଗ ନଦୀର ଜଳ ବିଷାକ୍ତ ହୋଇଯାଇଛି । ନଦୀ ଅବବାହିକାରେ ବୃହତ୍ ବୃହତ୍ ଇସ୍ପାତ କାରଖାନା ଓ ଆଣବିକ କାରଖାନାରୁ ନିର୍ଗତ ଦୂଷିତ ପଦାର୍ଥ, ସହରାଞ୍ଚଳର ଦୂଷିତ ଜଳ, ଚମଡ଼ା କାରଖାନାରୁ ନିର୍ଗତ ଦୂଷିତ ପଦାର୍ଥ ନଦୀରେ ମିଶିବା ଯୋଗୁ ଅଧିକାଂଶ ନଦୀର ଜଳ ବ୍ୟବହାର ଉପଯୋଗୀ ହୋଇରହିନାହିଁ । ପ୍ରତ୍ୟେକ ଶିଳ୍ପୋନ୍ନତ ରାଷ୍ଟ୍ରରେ ଜଳଚର ଜୀବଙ୍କ ସଂଖ୍ୟା ୩୫ପ୍ରତିଶତ ହ୍ରାସ ପାଇଥିବା ବେଳେ ବିଲୋପ ହେଉଥିବା ଜଳଚର ଜୀବଙ୍କ ପରିମାଣ ୨୫ ପ୍ରତିଶତ ହୋଇଛି ।

ତୈଳ ବିଶୋଧନାଗାରରୁ ନିର୍ଗତ ଦୂଷିତ ପେଟ୍ରୋଲିୟମ ପଦାର୍ଥ ନଦୀ ଓ ସାଗରରେ ମିଶିବା ଯୋଗୁ ଜଳ ବିଷାକ୍ତ ହୋଇପଡୁଛି । ଏହାଛଡ଼ା ଅଧିକାଂଶ ସମୟରେ ତୈଳ ଖଣିରୁ ତୈଳ ନିର୍ଗତ ହୋଇ ଜଳରେ ମିଶିବା ଦ୍ୱାରା ଜଳ ବ୍ୟବହାର ଉପଯୋଗୀ ହୋଇପାରୁ ନାହିଁ ଏବଂ ପର୍ଯ୍ୟାପ୍ତ ପରିମାଣ ଜଳ ଚିରଦିନ ଲାଗି ବିଷାକ୍ତ ହୋଇଯାଇଛି । ଖୋଦ ଆମେରିକାରେ ୪୦ ପ୍ରତିଶତ ନଦୀରେ ମାଛ ବଞ୍ଚୁନଥିବା ବେଳେ ୩୭ ଭାଗ ବିଭିନ୍ନ ମାଛ ବିଲୋପ ହୋଇଗଲାଣି । ୫୭ପ୍ରତିଶତ ଜଳଚର ଜୀବ ମଧ୍ୟ ବିଲୁପ୍ତ

ହେଲେଣି । ଭାରତରେ ମଧ୍ୟ ସମଧରଣର ଦଶା ଦେଖାଦେଇଛି । ଗଂଗା ନଦୀ ପରି ଏକ ଅତି ପ୍ରାଚୀନ ନଦୀ ଏହାର ଏକ ସଦ୍ୟତମ ଉଦାହରଣ । ୫୦୦ରୁ ଅଧିକ ଚମଡ଼ା କାରଖାନା, ସାବୁନ କାରଖାନା, ଅନ୍ୟାନ୍ୟ ରାସାୟନିକ ପଦାର୍ଥ କାରଖାନାର ଦୂଷିତ ଜଳ ୫୦ରୁ ଅଧିକ ସହରର ଆବର୍ଜନା ଗଂଗାରେ ମିଶିବା ଯୋଗୁ ଏହି ନଦୀ ଜଳ ସ୍ପର୍ଶ କରିବା ମଧ୍ୟ ବିପଜ୍ଜନକ ହୋଇଛି ।

ଜାତିସଂଘ ଶିଳ୍ପ ବିକାଶ ସଂଗଠନ (United Nation Industrial Development Organisation - UNIDO)ର ତଥ୍ୟାନୁସାରେ ୨୦୨୫ବେଳକୁ ପୃଥିବୀର କାରଖାନା ପରିମାଣ ଦୁଇଗୁଣ ହେବ ଏବଂ ୯୦ଭାଗ ନଦୀଜଳ ବିଷାକ୍ତ ହୋଇଯିବ ।

ବିଭିନ୍ନ ନଦୀଜଳର ଦୂଷିତ ପଦାର୍ଥ ଆସିବାରୁ ଆଫ୍ରିକାର ପ୍ରସିଦ୍ଧ ହ୍ରଦ ଭିକ୍ଟୋରିଆ ପୋତି ହୋଇଗଲାଣି । ଏହି ହ୍ରଦ ମଧ୍ୟକୁ ଏକାଦି କ୍ରମେ କେନିଆ, ଟାଞ୍ଜାନିଆ ଓ ଉଗାଣ୍ଡାରୁ ଦୂଷିତ ଓ ପଟୁମିଶ୍ରିତ ଜଳ ପ୍ରବେଶ କରିବାରୁ ଏହି ବିଶ୍ୱ ପ୍ରସିଦ୍ଧ ହ୍ରଦ ଲୀନ ହେବାକୁ ଯାଉଛି । ସେହିପରି ବିଶ୍ୱ ପ୍ରସିଦ୍ଧ ଚିଲିକା ହ୍ରଦର ଅବସ୍ଥା ମଧ୍ୟ ସମଧରଣର ହେବାକୁ ଯାଉଛି ।

ଯମୁନା, ଗଂଗା ଓ ବ୍ରହ୍ମପୁତ୍ର ନଦୀ ମଧ୍ୟକୁ ଦୈନିକ ୩୦୦ନିୟୁତ ଲିଟର ବିଷାକ୍ତ/ ଅପମିଶ୍ରିତ ଜଳ ପ୍ରବେଶ କରୁଥିବାରୁ ଏହି ତିନୋଟି ଐତିହାସିକ ନଦୀର ଜଳ ବିଷାକ୍ତ ହୋଇଗଲାଣି । ମୁମ୍ବାଇ, ଚେନ୍ନାଇ, ଦିଲ୍ଲୀ ଓ କୋଲକାତା ସହରର ବିଷାକ୍ତ / ଦୂଷିତ ଜଳ ଏହି ସହର ନିକଟ ଦେଇ ଯାଇଥିବା ନଦୀରେ ପଡୁଥିବାରୁ ସଂଲଗ୍ନ ନଦୀଜଳରେ ଜଳଚରଜୀବ ବଞ୍ଚିବା ମଧ୍ୟ ସମ୍ଭବ ହେଉନାହିଁ ।

ନଦୀଜଳ ପବିତ୍ର ସ୍ଥଳରୁ ବାହାରି ମଧ୍ୟ ବିଭିନ୍ନ ଦେଶ ଦେଇ ଯାଉଥିବାରୁ ଏହାର ରକ୍ଷଣାବେକ୍ଷଣ ପ୍ରତି ଧ୍ୟାନ ଦିଆଯିବା ସମ୍ଭବ ହୋଇପାରୁନାହିଁ । ଚାଇନାର ବିଶ୍ୱପ୍ରସିଦ୍ଧ ମେକଙ୍ଗ ନଦୀ ଚାଇନାରୁ ବାହାରି ମିୟାମାର୍, ଲାଓସ, କାମ୍ବୋଡିଆ, ଥାଇଲାଣ୍ଡ ଓ ଭିଏତ୍‌ନାମ୍ ଦେଇ ଯାଇଛି । ଛଅଛଅଟି ଦେଶ ମଧ୍ୟରେ ପ୍ରବାହିତ ଏହି ନଦୀରେ ଦୈନିକ ୧୦୦୦ନିୟୁତ ଲିଟର ବିଷାକ୍ତ ଦ୍ରବ୍ୟ, ଦୂଷିତ ଜଳ, ମଳମୂତ୍ର ମିଶୁଛି । ଫଳରେ ନଦୀର ତଳ ମୁଣ୍ଡକୁ ଏହି ନଦୀର ଜଳ ସଂପୂର୍ଣ୍ଣ ବିଷାକ୍ତ ହୋଇଯାଇଥାଏ ।

ଜଳରେ ବିଷାକ୍ତ ଦ୍ରବ୍ୟର ମିଶ୍ରଣ ଯୋଗୁ ଅନେକ ପ୍ରକାର ଜଳଚର ଜୀବ ବିଲୁପ୍ତ ହୋଇଯାଇଛି । ଉଦାହରଣ ସ୍ୱରୂପ ୧୦୦ ବର୍ଷ ତଳେ ନେଦରଲ୍ୟାଣ୍ଡର ରାଇନ ନଦୀରୁ

ଦୈନିକ ୧,୫୦,୦୦୦ ସଲମାନ ମାଛ ଧରାଯାଉଥିଲା । ମାତ୍ର ବର୍ତ୍ତମାନ ଏହି ନଦୀରେ ସଲମାନ ମାଛ ମିଳିବା ଅସମ୍ଭବ ହୋଇପଡିଛି ।

ବିଶୁଦ୍ଧ ଜଳରେ ଟୋପାଏ ବିଷାକ୍ତ ରାସାୟନିକ ପଦାର୍ଥ ମିଶିଲେ ଶହ ଶହ ଲିଟର ଜଳ ବ୍ୟବହାର ଅନୁପଯୁକ୍ତ ହୋଇଯାଇଥାଏ । ଏହାସତ୍ତ୍ୱେ ଶିଳ୍ପପତିମାନେ ଅଯାଚିତ ଭାବେ କାରଖାନାରୁ ନିର୍ଗତ ବିଷାକ୍ତ ଜଳକୁ ଲୁଚାଛପାରେ ନଦୀ ମଧ୍ୟକୁ ଛାଡି ଦିଅନ୍ତି । ସର୍ଭେରୁ ଜଣାଯାଇଛି ଯେ ଗୋଟିଏ ଟୋପା ତୈଳ ୨୫ଲିଟର ମଧୁର ପାନୀୟ ଜଳକୁ ପିଇବା ଅନୁପଯୋଗୀ କରିଦେଇଥାଏ । ସେହିପରି କସ୍‌ମେଟିକସ୍ ଓ କୀଟନାଶକ ଔଷଧରେ ବ୍ୟବହୃତ ହେଉଥିବା ପଲିକ୍ଲୋରିନେଟେଡ୍ ବାଇଫିନାଇଲ୍ (Polychlorinated biphenyle - PCB) ର ଏକ ଗ୍ରାମ ୧୦୦କୋଟି ଲିଟର ଜଳକୁ ବିଷାକ୍ତ କରିଦେଇଥାଏ । ଏଥିରୁ ସହଜରେ ଅନୁମେୟ ଯେ ସଭ୍ୟ ମଣିଷ କେତେ ପରିମାଣର ଜଳକୁ ବିଷାକ୍ତ କରୁଛି । ବାର୍ଷିକ ୩୦୦୦ କୋଟି ଡ଼ଲାର ମୂଲ୍ୟର ରାସାୟନିକ ପଦାର୍ଥ ତିଆରି ହେଉଛି ଏବଂ ଏହି ପଦାର୍ଥ ମୁଖ୍ୟତଃ ଜଳରେ ହିଁ ମିଶୁଛି । କେବଳ ମେକ୍‌ସିକୋର ସାଗର ଉପକୂଳରେ ବାର୍ଷିକ ୩୬୦୦୦ ଟନ ବିଷାକ୍ତ ପଦାର୍ଥ ମିଶୁଥିବା ଜଣାଯାଇଛି । ସେହିପରି ସାରାପୃଥିବୀରେ ଚାଲିଥିବା କାଗଜ କଳ ଯୋଗୁ ଦୈନିକ ୩୦୦୦ କୋଟି ଲିଟର ଜଳ ବ୍ୟବହାର ଅନୁପଯୋଗୀ ହେଉଛି । ଭାରତ ବି ଏଥିରେ ବାଦ ପଡିନାହିଁ ।

ପୃଥିବୀର ସମସ୍ତ ହ୍ରଦରେ ଥିବା ଜଳର ପରିମାଣ ହେଉଛି ବିଶ୍ୱର ମଧୁର ଜଳ ପରିମାଣର ୨୦ପ୍ରତିଶତ । ମାତ୍ର ଏହି ହ୍ରଦଗୁଡିକରେ ହଜାର ହଜାର ଜୀବଜନ୍ତୁଙ୍କ ଶବ, ମଳ, ମୂତ୍ର, ପାରଦ, ଲୌହ, ପଲିକ୍ଲୋରିନେଟେଡ୍, ବାଇଫିନାଇଲ୍, ମାଂଗାନିଜ୍, ଡାୟୋକ୍‌ସିନ୍ ଓ ଅନ୍ୟାନ୍ୟ ରାସାୟନିକ ପଦାର୍ଥ ମିଶିବା ଯୋଗୁ ହ୍ରଦଗୁଡିକ କ୍ରମଶଃ ମୃତ ସଂପଦରେ ପରିଣତ ହେବାରେ ଲାଗିଛନ୍ତି । ପୃଥିବୀର ସମସ୍ତ ଦ୍ରବ୍ୟ ମଧ୍ୟରୁ ବାର୍ଷିକ ୨୫ ନିୟୁତ ଟନ ପଟୁ, ଦୂଷିତ ପଦାର୍ଥ ପ୍ରବେଶ କରୁଛି । ପ୍ରାୟ ୩୦ ପ୍ରତିଶତ ଜଳ ଆଣବିକ ରିଆକ୍ଟରରୁ ନିର୍ଗତ ଦୂଷିତ ପଦାର୍ଥ ଯୋଗୁ ବିଷାକ୍ତ ହୋଇଥାଏ । ଏହି ହ୍ରଦଗୁଡିକରେ ଥିବା ଜୀବଜନ୍ତୁଙ୍କ ମଧ୍ୟରୁ ୨୦୦ ପ୍ରଜାତିର ପ୍ରାଣୀ ବିଲୁପ୍ତ ହୋଇଯାଇଛନ୍ତି । ଏହାଛଡ଼ା ଅନେକ ହ୍ରଦ କ୍ରମଶଃ ପୋତି ହୋଇପଡ଼ିବା ଯୋଗୁ ହ୍ରଦଗୁଡିକରେ ଜଳଧାରଣ କ୍ଷମତା ହ୍ରାସ ପାଉଛି ।

ଆଣ୍ଡେସରୁ ବାହାରି ଦୀର୍ଘ ୬୫୦୦ କିମି ଗତି କରି ଆଟଲାଣ୍ଟିକ ମହାସାଗରରେ ମିଶିଥିବା ପୃଥିବୀର ବୃହତ୍ତମ ନଦୀ ଆମାଜନ ଏବେ ଅନେକ ବିପଦର ସମ୍ମୁଖୀନ

ହୋଇଛି । ଏହି ନଦୀର ୩୦୦୦ ପ୍ରଜାତିର ଜୀବ ବାସ କରୁଥିବା ବେଳେ ଏବେ ସେମାନଙ୍କର ସଂଖ୍ୟା ୧୫୦୦କୁ କମି ଆସିଲାଣି । ଆମାଜନ ନଦୀ ତଟବର୍ତ୍ତୀ ଇଲାକାରେ ସହରାଞ୍ଚଳ ବୃଦ୍ଧି, ରାସାୟନିକ ପଦାର୍ଥ ନିର୍ଗତ ଇତ୍ୟାଦି କାରଣ ଯୋଗୁ ଏହି ନଦୀ ଉପରେ ବିପଦ ଦେଖାଦେଇଛି ।

ହ୍ରଦଗୁଡିକ ପ୍ରତି ଉପଯୁକ୍ତ ଧ୍ୟାନ ଦିଆଯାଉନଥିବାରୁ ଏହି ହ୍ରଦଗୁଡିକର ଆକାର ହ୍ରାସ ପାଉଥିବା ବେଳେ ଲବଣାକ୍ତ ପରିମାଣ ବୃଦ୍ଧି ପାଉଛି । ଆରବ ସାଗରର ଆକାର ୮୦ପ୍ରତିଶତ କମ ହୋଇଯାଇଥିବା ବେଳେ ଏହାର ଲବଣ ପରିମାଣ ୨୦ଗୁଣ ବୃଦ୍ଧି ପାଇଛି । ସେହିପରି ଚିଲିକା ହ୍ରଦର ରୂପରେଖ ୩୫ ପ୍ରତିଶତ ହ୍ରାସ ପାଉଥିବା ବେଳେ ଏହାର ଲବଣ ପରିମାଣ ମଧ୍ୟ ୧୫ପ୍ରତିଶତ ବୃଦ୍ଧି ପାଇଛି ।

ନଦୀଗୁଡିକରେ ଗଚ୍ଛିତ ଜଳ ପ୍ରତି ଧ୍ୟାନ ନଦେଇ ଅନେକ ସ୍ଥାନରେ ବୃହତ୍ ନଦୀବନ୍ଧ ସ୍ଥାପନର ମାନସିକତା ଏବେ ସର୍ବତ୍ର ଦେଖାଗଲାଣି । ପୃଥିବୀରେ ସଂପ୍ରତି ୮,୫୦,୦୦୦ କ୍ଷୁଦ୍ର ନଦୀବନ୍ଧ ଓ ୪୫,୦୦୦ ବୃହତ ନଦୀବନ୍ଧ ପ୍ରତିଷ୍ଠା ହୋଇଛି । ଫଳରେ ପୃଥିବୀର ୬୦ଭାଗ ନଦୀର ପ୍ରାକୃତିକ ଧାରାକୁ ବନ୍ଦ କରି ଦିଆଯାଉଛି । ଚାଇନାରେ ସର୍ବାଧିକ ନଦୀବନ୍ଧ ପ୍ରତିଷ୍ଠା ହୋଇଥିବା ବେଳେ ତା ପଛକୁ ରହିଛନ୍ତି ଆମେରିକା, ରୁଷିଆ, ଜାପାନ ଓ ଭାରତ । ଭାରତରେ ମାତ୍ର ୧୦ପ୍ରତିଶତ ନଦୀଜଳ ବିନା ନଦୀବନ୍ଧରେ ପ୍ରବାହିତ ହେଉଛି । ବିଶ୍ୱରେ ଡ୍ୟାମ୍ ସଂସ୍କୃତି ବୃଦ୍ଧି ପାଉଥିବା ଯୋଗୁ ସମୁଦାୟ ୫ଲକ୍ଷ ବର୍ଗ ମାଇଲ ଅଞ୍ଚଳ ଜଳବନ୍ଦୀ ହୋଇଛି ଯାହା ସମସ୍ତ ନଦୀର ପ୍ରବାହିତ ଅଞ୍ଚଳ ପରିମାଣର ୬ଗୁଣ । ବୃହତ ନଦୀବନ୍ଧ ଯୋଗୁ ପୃଥିବୀ ଭୂପୃଷ୍ଠରେ ଚାପ ସୃଷ୍ଟି ହୁଏ ଏବଂ ଡ୍ୟାମ୍ ଗୁଡିକରୁ ପ୍ରଚୁର ପରିମାଣର କାର୍ବନ ଡାଇଅକସାଇଡ୍ ଓ ମିଥେନ୍ ଗ୍ୟାସ ନିର୍ଗତ ହୁଏ ଯାହା ଜଳବାୟୁ ଉପରେ ଯଥେଷ୍ଟ କୁପ୍ରଭାବ ପକାଏ । ଗତି ସଂପନ୍ନ ଜଳକୁ ଗୋଟିଏ ଜାଗାରେ ବାନ୍ଧି ରଖିବା ଦ୍ୱାରା ଦୈନିକ କୋଟି କୋଟି ଲିଟର ଜଳ ବାଷ୍ପ ହୋଇଥାଏ ଏବଂ ପାଣିପାଗର ତାରତମ୍ୟ ଘଟାଏ । ବାସ୍ତବରେ ପ୍ରାକୃତିକ ସଂପଦର ଗନ୍ତାଘର ଧରଣୀ ଉପରେ ମନୁଷ୍ୟକୃତ ଅତ୍ୟାଚାର କ୍ରମଶଃ ଅସହ୍ୟ ହେଉଛି ।

ପୃଥିବୀର ଜଳବାୟୁରେ ଭାରସାମ୍ୟ ରକ୍ଷା କରିବା ଏକ ଅପରିହାର୍ଯ୍ୟ କର୍ତ୍ତବ୍ୟ । ଜଳବାୟୁର ସୁରକ୍ଷା ନିମନ୍ତେ ୧୯୭୨ରେ ଷ୍ଟକ୍‌ହୋମ୍‌ଠାରେ ଜାତିସଂଘ ମାନବ ଜଳବାୟୁ ଘୋଷଣାନାମା ସ୍ୱାକ୍ଷରିତ ହୋଇଥିଲା । ୧୯୭୨ ଜୁନ୍ ୫ରେ ମଧ୍ୟ ଜାତିସଂଘ ସାଧାରଣ ଆସେମ୍ବ୍ଲିରେ ବିଶ୍ୱ ପରିବେଶ ଦିବସ ଘୋଷିତ ହୋଇଥିଲା । ଏଥିରେ ରହିଥିଲା ମହାର୍ଘ୍ୟ ସମୁଦ୍ରଗୁଡିକର ସୁରକ୍ଷା ଏକ ପବିତ୍ର କର୍ତ୍ତବ୍ୟ । ପୃଥିବୀରେ ଜୀବସୃଷ୍ଟି

ପରେ ଜଳ ମଣ୍ଡଳ, ଲିଥୋସ୍ପିୟର ଓ ବାୟୋସ୍ପିଅର ସହ ସାମଞ୍ଜସ୍ୟ ରଖି ସମୁଦ୍ର ଜଳ ପୃଥିବୀର ୭୧ଭାଗ ଅଞ୍ଚଳକୁ ଆଚ୍ଛାଦିତ କରି ରଖିଛି । ସମୁଦ୍ର ଜଳପତନ ବୃଦ୍ଧି ବା ହ୍ରାସ ସମଗ୍ର ଜୀବ ଜଗତ ଉପରେ କୁପ୍ରଭାବ ପକାଇବା ସ୍ୱାଭାବିକ । ମାତ୍ର ସମୁଦ୍ରଜାତ ସଂପଦକୁ ଶୋଷଣ କରିବା ଏବଂ ଏହାର ଜଳକୁ ଦୂଷିତ କରିବା କ୍ଷେତ୍ରରେ ମଣିଷ ପ୍ରାଥମିକ ଭୂମିକା ଗ୍ରହଣ କରିଛି । ବ୍ରିଟେନ, କାନାଡ଼ା, ଆମେରିକା, ଭେନେଜୁଆଲା, ନାଇଜେରିଆ, ଇଣ୍ଡୋନେସିଆ ଓ ଉପସାଗରୀୟ ରାଷ୍ଟ୍ରଗୁଡ଼ିକ ସମୁଦ୍ରକୁ ବାଣିଜ୍ୟ/ ବ୍ୟବସାୟ / ପେଟ୍ରୋଲିୟମ ଉତ୍ତୋଳନର ପ୍ରମୁଖ କ୍ଷେତ୍ରରେ ପରିଣତ କରୁଛନ୍ତି । ପୃଥିବୀର ପ୍ରାୟ ୩୦୦ କୋଟି ଲୋକ ସମୁଦ୍ର ଉପରେ ନିର୍ଭର କରି ଜୀବିକା ନିର୍ବାହ କରିଥାନ୍ତି । ମାତ୍ର ଅର୍ଥନୈତିକ ଲୋଭ, ମୁନାଫା ଅର୍ଜନର ସୀମାହୀନ କାମନା ଯୋଗୁ ସମୁଦ୍ର କ୍ରମଶଃ ଅଶାନ୍ତ ଓ ବିଷାକ୍ତ ହେବାରେ ଲାଗିଛି । ସମୁଦ୍ରରେ ମାଛ ପରିମାଣ ୩୫ପ୍ରତିଶତ ହ୍ରାସ ପାଇଥିବା ବେଳେ ଜଳଚର ଜୀବଙ୍କ ଲାଗି ୪୫ ପ୍ରତିଶତ ସାମୁଦ୍ରିକ ଜଳ ଅନୁପଯୁକ୍ତ ହୋଇଛି ।

ସମୁଦ୍ରରେ ମନଇଚ୍ଛା ତୈଳ ଉତ୍ତୋଳନ ଯୋଗୁ ଏବଂ ପ୍ରତିବର୍ଷ ସମୁଦ୍ର ମଧ୍ୟକୁ ୨୧ ନିୟୁତ ବ୍ୟାରେଲ ଅଶୋଧିତ ଜଳ ପ୍ରବେଶ କରୁଥିବା ହେତୁ ୮୦୦ ନିୟୁତ ଲିଟର ଜଳ ବାର୍ଷିକ ନଷ୍ଟ ହୋଇଯାଉଛି । ପ୍ରାଚ୍ୟ ଓ ପାଶ୍ଚାତ୍ୟ ମଧ୍ୟରେ ସଂପର୍କ, ବିଶ୍ୱର ବିଭିନ୍ନ ଭାଗ ମଧ୍ୟରେ ସଂପର୍କ, ଅର୍ଥ ନୀତିର ଉନ୍ନତି ତଥା ଜୀବଜଗତର ଅଶେଷ ଉପକାର ସାଧନ କରୁଥିବା ସମୁଦ୍ର ଉପରେ ମଣିଷର ଅମାନବିକ ଶୋଷଣ ଶେଷରେ ସମୁଦ୍ରର ଆଗତ ସୁନେଲି ଭବିଷ୍ୟତକୁ ହିଁ ନଷ୍ଟ କରିବ ।



# ନର୍ମଦା: ସ୍ୱପ୍ନ ବହୁଦୂରେ

ଗୁଜୁରାଟ, ମଧ୍ୟ ପ୍ରଦେଶ ଓ ମହାରାଷ୍ଟ୍ରର ବିସ୍ତୀର୍ଣ୍ଣ ଅଞ୍ଚଳରେ ଜଳସେଚନ ବ୍ୟବସ୍ଥା, ବିଦ୍ୟୁତ ଉତ୍ପାଦନ ଇତ୍ୟାଦି ପ୍ରସଂଗକୁ ଆଖି ଆଗରେ ରଖି ନର୍ମଦା ନଦୀବନ୍ଧ ପ୍ରକଳ୍ପ ନିର୍ମାଣର ଆବଶ୍ୟକତା ଦେଖାଦେଇଥିଲା । ୧୯୬୧ରେ ପ୍ରଧାନମନ୍ତ୍ରୀ ଜବାହରଲାଲ ନେହରୁ ଥିବାବେଳେ ଏହାର ଉଚ୍ଚତା ମାତ୍ର ୪୯.୮ ମିଟର ଧାର୍ଯ୍ୟ କରାଯାଇଥିଲା । ୧୯୭୯ରେ ନର୍ମଦା ନଦୀଜଳ ବିବାଦ ଟ୍ରିବ୍ୟୁନାଲ ପକ୍ଷରୁ ଏକ ଗୁରୁତ୍ୱପୂର୍ଣ୍ଣ ରାୟ ପ୍ରକାଶ ପାଇଥିଲା ଏବଂ ଏହାର ଉଚ୍ଚତା ୧୩୮.୬୮ ମିଟର କରିବା ପାଇଁ କୁହାଯାଇଥିଲା । ଏହି ଟ୍ରିବ୍ୟୁନାଲ ରାୟ ପ୍ରକାଶ ପାଇବା ପୂର୍ବରେ କୌଣସି ସର୍ଭେ କରାଯାଇ ନଥିଲା ଏବଂ ଏପରିକି ପରିବେଶ ସଂପର୍କରେ ମଧ୍ୟ କୌଣସି ଗବେଷଣା କରାଯାଇ ନଥିଲା । ଏହି ପ୍ରକଳ୍ପ ନିର୍ମାଣ ପାଇଁ ସେତେବେଳେ ବିଶ୍ୱବ୍ୟାଙ୍କ ସହାୟତା ଘୋଷଣା କରିଥିଲା ଏବଂ ୧୯୮୫ରେ ୪୫୦ ନିୟୁତ ଡ଼ଲାର ଋଣ ଯୋଗାଇବ ବୋଲି ପ୍ରତିଶ୍ରୁତି ଦେଇଥିଲା । ମାତ୍ର ସେତେବେଳକୁ ଏହି ପ୍ରକଳ୍ପ ନିମନ୍ତେ କେନ୍ଦ୍ର ପରିବେଶ ମନ୍ତ୍ରଣାଳୟ ସବୁଜ ସଂକେତ ଦେଇନଥିଲା । ପରିବେଶ ମନ୍ତ୍ରଣାଳୟର କଟକଣା ଏବଂ ଥଇଥାନ ସମସ୍ୟା ଯୋଗୁ ବିଶ୍ୱବ୍ୟାଙ୍କ୍ ଏହି ପ୍ରକଳ୍ପରୁ ଓହରିଯାଇଥିଲା । ମାତ୍ର ତରବରିଆ ଭାବେ ପରିବେଶ ଓ ଜଙ୍ଗଲ ମନ୍ତ୍ରଣାଳୟ ସବୁଜ ସଂକେତ ଦେବା ପରେ ପ୍ରକଳ୍ପରେ ପୁଞ୍ଜି ବିନିଯୋଗ ନିମନ୍ତେ ବିଶ୍ୱବ୍ୟାଙ୍କ ଆଗ୍ରହୀ ହୋଇଥିଲା । ଜଙ୍ଗଲ ଓ ପରିବେଶ ମନ୍ତ୍ରଣାଳୟରୁ ଅନୁମତି ପାଇବା ପାଇଁ ମଧ୍ୟପ୍ରଦେଶ ଓ ଗୁଜୁରାଟ ସରକାର ପ୍ରାଣପଣେ ଉଦ୍ୟମ କରିଥିଲେ । କେନ୍ଦ୍ର ଜଳ ସଂପଦ ବିଭାଗ ପକ୍ଷରୁ ଏହି ପ୍ରକଳ୍ପ ରିପୋର୍ଟ ଠିକ୍ ଭାବେ ପ୍ରସ୍ତୁତି ହୋଇନାହିଁ ଏବଂ ବିସ୍ଥାପିତ ହେବାକୁ ଥିବା ଲୋକମାନଙ୍କର ଥଇଥାନ ସଂପର୍କରେ କୌଣସି ବଳିଷ୍ଠ ଯୋଜନା ତିଆରି ହୋଇନାହିଁ ବୋଲି ଦର୍ଶାଯାଇଥିଲା । ୧୯୮୬ ନଭେମ୍ବର ୨୦ ତାରିଖର ଅନ୍ୟ ଏକ ରିପୋର୍ଟରେ ଜଳ ସଂପଦ ବିଭାଗ ମଧ୍ୟ ପ୍ରକଳ୍ପ ନିର୍ମାଣକୁ ଅନୁମତି ନଦେଇ ଏହାର ଭିତ୍ତିଭୂମିର ପୁନଃସମୀକ୍ଷା ପାଇଁ ନିର୍ଦ୍ଦେଶ ଦେଇଥିଲା । ୧୯୮୭ ଜାନୁୟାରୀ ୧୫ ତାରିଖରେ ଏହା ପ୍ରଧାନମନ୍ତ୍ରୀ ନିକଟକୁ ଗଲା ଏବଂ

ଶେଷରେ ତତ୍କାଳୀନ ପ୍ରଧାନମନ୍ତ୍ରୀ ରାଜୀବଗାନ୍ଧୀ ଜାନୁଆରୀ ୧୯ରେ ଦର୍ଶାଇଥିଲେ ଯେ "ନର୍ମଦା ନଦୀ ବନ୍ଧ ନିର୍ମାଣ କରାଯାଇପାରେ ମାତ୍ର ଏକ ନଦୀବନ୍ଧ କର୍ତ୍ତୃପକ୍ଷ ଗଠନର ଆବଶ୍ୟକତା ରହିଛି ।" ତେବେ ଏହି ପ୍ରକଳ୍ପକୁ ଯେ ପ୍ରଧାନମନ୍ତ୍ରୀଙ୍କ ଅନୁମତି ତାହା କରିବା ଭୁଲ ହେବ କାରଣ ଏହି ବକ୍ତବ୍ୟରେ କୌଣସି ନିର୍ଦ୍ଦିଷ୍ଟ ସୂଚନା ନଥିଲା । ଶେଷରେ ପ୍ରବଳ ଚାପ ଯୋଗୁ ଅଧିକୃତ ଅଞ୍ଚଳ ବିକାଶ ଯୋଜନା, ନଦୀବନ୍ଧ ଅଞ୍ଚଳ ଉନ୍ନୟନ ଯୋଜନା, ଥଇଥାନ ଯୋଜନା ଇତ୍ୟାଦି କମିଟିମାନ ଗଠନ କରିବା ନିର୍ଦ୍ଦେଶ ଦେଇ ପରିବେଶ ମନ୍ତ୍ରଣାଳୟ ୧୯୮୭ ଜୁନ ୨୪ରେ ଏହି ପ୍ରକଳ୍ପକୁ ଅନୁମତି ପ୍ରଦାନ କରିଥିଲେ । ମାତ୍ର ଦୀର୍ଘ ୧୩ବର୍ଷ ପର୍ଯ୍ୟନ୍ତ ସ୍ଥାନୀୟ ଅଧିବାସୀଙ୍କ ସମସ୍ୟାଗୁଡ଼ିକୁ ଅବଲୋକନ କରାଯାଇ ନଥିଲା ବା କୌଣସି ଯୋଜନାର ସର୍ଭେ କରାଯାଇନଥିଲା ।

୧୯୭୯ରେ ବିସ୍ଥାପିତ ହେବାକୁ ଥିବା ଲୋକଙ୍କ ସଂଖ୍ୟା ୧୫ ହଜାର ଥିବା ବେଳେ ବର୍ତ୍ତମାନ ବଢ଼ି ବଢ଼ି ଏହା ୨ଲକ୍ଷ ୨୦ ହଜାରରେ ପହଞ୍ଚିଛି । ଅପରପକ୍ଷେ ବିସ୍ଥାପିତ ହୋଇଥିବା ମଧ୍ୟରୁ କେବଳ ୮୦ଭାଗ ଲୋକ ମଧ୍ୟପ୍ରଦେଶର ହୋଇଥିବା ବେଳେ ସେମାନଙ୍କୁ ଥଇଥାନ କରିବା ସାମର୍ଥ୍ୟ ସରକାରଙ୍କ ନିକଟରେ ନାହିଁ ବୋଲି ମଧ୍ୟପ୍ରଦେଶ ସରକାର ଏକ ସତ୍ୟପାଠରେ ପ୍ରକାଶ କରିଛନ୍ତି । ମଧ୍ୟପ୍ରଦେଶରେ ବୃହତ୍ ବାର୍ଗି ଡ୍ୟାମ ଓ ମହେଶ୍ୱର ଡ୍ୟାମ୍ ନିର୍ମିତ ହୋଇଥିବା ସତ୍ତ୍ୱେ ଏହି ପ୍ରକଳ୍ପ ଦ୍ୱାରା ବିସ୍ଥାପିତ ହୋଇଥିବା ବାର୍ଗି ଡ୍ୟାମ୍‌ର ୧,୧୪,୦୦୦ ଲୋକ ଓ ମହେଶ୍ୱର ଡ୍ୟାମ୍‌ର ୩୦,୦୦୦ ଲୋକଙ୍କୁ ଥଇଥାନ କରାଯାଇନାହିଁ । ନର୍ମଦା ଡ୍ୟାମର ଲକ୍ଷାଧିକ ଲୋକଙ୍କୁ ମଧ୍ୟ ଥଇଥାନ କରାଯାଇନାହିଁ ।

ବୃହତ୍ ସ୍ୱାର୍ଥ ଦୃଷ୍ଟିରୁ ଯେତେଯେତେ ପ୍ରକଳ୍ପ ଭାରତରେ ନିର୍ମିତ ହୋଇଛି ସବୁଥିରେ ଦେଖା ଦେଇଛି ଯେ ବିସ୍ଥାପିତ ହୋଇଥିବା ଲୋକମାନେ ସର୍ବସ୍ୱ ହରାଇଛନ୍ତି ମାତ୍ର କିଛି ପାଇ ନାହାନ୍ତି । ଭାରତର ସମୁଦାୟ ୩୬୦୦ଟି ମଧ୍ୟମ ଜଳ ପ୍ରକଳ୍ପ ଓ ୬୯୫ଟି ବୃହତ ଜଳ ପ୍ରକଳ୍ପ ମଧ୍ୟରୁ ୯୦ଭାଗ ପ୍ରକଳ୍ପର ବିସ୍ଥାପିତ ଲୋକେ ନ୍ୟାୟ ପାଇନାହାନ୍ତି । ପଞ୍ଜାବରେ ବୃହତ୍ ଭାକ୍ରା ନଂଗଲ ଡ୍ୟାମ୍‌ର ବିସ୍ଥାପିତ ପରିବାର ମଧ୍ୟରୁ ୯୫ଭାଗ ଲୋକ ବର୍ତ୍ତମାନ ଭିଟାମାଟି ହରାଇ ନିଃସ୍ୱ ହୋଇଯାଇଥିବା ବେଳେ ପ୍ରାୟ ସମସ୍ତ ବୃହତ୍ ପ୍ରକଳ୍ପ କ୍ଷେତ୍ରରେ ଏହି ଅବସ୍ଥା ଦେଖାଦେଇଛି ।

ଗତ ୫୦ବର୍ଷ ମଧ୍ୟରେ ବିଭିନ୍ନ ଡ୍ୟାମ୍ ନିର୍ମାଣ କରାଯାଇ ପ୍ରାୟ ୬କୋଟି ଲୋକଙ୍କୁ ବିସ୍ଥାପିତ କରାଯାଇଛି ଏବଂ ସେମାନଙ୍କ ମଧ୍ୟରୁ ପ୍ରାୟ ୪କୋଟି ଲୋକଙ୍କୁ ରାସ୍ତାର ଭିକାରୀ ସଜାଇ ଦିଆଯାଇଛି । ଅପରପକ୍ଷେ ଏତେ ଡ୍ୟାମ୍ ନିର୍ମାଣ କରାଯାଇ

ମଧ୍ୟ ନଦୀବନ୍ଧ ଜଳର ସଦୁପଯୋଗ କରାଯାଇ ନଥିବାରୁ ବୃହତ୍ ଡ୍ୟାମ୍‌ଗୁଡ଼ିକ ଦ୍ୱାରା ଭାରତର ମାତ୍ର ୧୦ଭାଗ ଫସଲ ଉତ୍ପାଦିତ ହେଉଛି ବୋଲି ଜଣାଯାଇଛି ।

ବିଶ୍ୱ ନଦୀବନ୍ଧ କମିଶନ ପକ୍ଷରୁ ପ୍ରକାଶିତ ଏକ ରିପୋର୍ଟରେ କୁହାଯାଇଛି ଯେ ଭାରତରେ ଯେତେ ଡ୍ୟାମ୍ ତିଆରି ହୋଇଛି ସେଥିରୁ ୮୦ଭାଗ ପ୍ରକଳ୍ପ କ୍ଷେତ୍ରରେ ପରିବେଶଗତ ପ୍ରଭାବ ସଂପର୍କରେ ସର୍ଭେ କରାଯାଇ ନାହିଁ । ଡ୍ୟାମ୍ ନିର୍ମାଣ ଯୋଗୁ ଭାରତରେ ୧୦ ନିୟୁତ ହେକ୍ଟର ଜଙ୍ଗଲ ଧ୍ୱଂସ ପାଇଯାଇଛି ବା ଜଳମଗ୍ନ ହୋଇଯାଇଛି ।

ଭାରତ ଜନ ସଂଖ୍ୟାର ଏକ ଚତୁର୍ଥାଂଶ ଏବଂ ଭାରତର ସମଗ୍ର ଭୂଭାଗ ଠାରୁ ଚାରିଗୁଣ ଅଧିକ ଥାଇ ବି ଆମେରିକାରେ ବହୁତ କମ୍ ନଦୀବନ୍ଧ ପ୍ରକଳ୍ପ ରହିଛି ଏବଂ ନଦୀବନ୍ଧ ପ୍ରକଳ୍ପ ନିର୍ମାଣରେ ଖୁବ୍ କମଲୋକଙ୍କୁ ବିସ୍ଥାପିତ କରାଯାଇଛି । ଜଳସେଚନ ପ୍ରଣାଳୀକୁ କେବଳ ନଦୀବନ୍ଧଭିତ୍ତିକ ନକରି ନଦୀଭିତ୍ତିକ କରାଯାଇଥିବାରୁ ଆମେରିକା ଭାରତଠାରୁ ଯଥେଷ୍ଟ ଆଗରେ ରହିଛି । କାବେରୀ ନଦୀର ଦୁଇଟି ନଦୀବନ୍ଧ, କ୍ରିଷ୍ଣାରାଜ ସାଗର, (କର୍ଣ୍ଣାଟକ) ଓ ମେଟ୍ଟୁର - (ତାମିଲନାଡୁ) ଯୋଗୁ ଦକ୍ଷିଣ ଭାରତ ମରୁଡ଼ିରୁ ବଞ୍ଚି ଯାଇଛି । ସେହିପରି ପୃଥିବୀର ସବୁଠାରୁ ବୃହତ ନଦୀବନ୍ଧ ଯୋଜନା ପଞ୍ଜାବର ଭାକ୍ରାନଂଗଲ (ଗୋବିନ୍ଦ ସାଗର ଡ୍ୟାମ) ଯୋଗୁ ସମଗ୍ର ପଞ୍ଜାବ, ହରିଆନାରେ ଶସ୍ୟ ବିପ୍ଳବ ସୃଷ୍ଟି ହୋଇଛି । ଚମ୍ବଲ ନଦୀର ତିନୋଟି ନଦୀବନ୍ଧ ଯୋଗୁଁ ମଧ୍ୟପ୍ରଦେଶ ଓ ରାଜସ୍ଥାନ ଶସ୍ୟ ଶ୍ୟାମଳା ହୋଇଛି । ତେବେ ନଦୀବନ୍ଧ ନିର୍ମାଣ କରିଦେଲେ ହେବ ନାହିଁ ନଦୀବନ୍ଧ ଦ୍ୱାରା କ୍ଷତିଗ୍ରସ୍ତ ହେଉଥିବା ପରିବାରଗୁଡ଼ିକ ଯେପରି ଥଇଥାନ ହୋଇପାରିବେ ସେଥିପାଇଁ ଦୃଷ୍ଟି ଦେବା ଆବଶ୍ୟକ । ଚୀନରେ ପୃଥିବୀର ସବୁଠାରୁ ବଡ ଡ୍ୟାମ୍ 'ଥ୍ରୀ ଜର୍ଜସ ଡ୍ୟାମ୍' ନିର୍ମିତ ହୋଇଛି ଯାହା ନର୍ମଦା ନଦୀବନ୍ଧର ପ୍ରାୟ ଚାରିଗୁଣ ଏବଂ ସାଢେ ତିନିଲକ୍ଷ ଲୋକ ବିସ୍ଥାପିତ ହୋଇଛନ୍ତି । ତଥାପି ସେମାନଙ୍କ ସଂପୂର୍ଣ୍ଣ ଥଇଥାନ କରାଯାଇଛି । ବିସ୍ଥାପିତମାନଙ୍କ ପାଇଁ ଏକ ସହର ମଧ୍ୟ ନିର୍ମାଣ କରାଯାଇଛି ।

ଗତ ୧୯୮୦ମସିହାରେ ସେହିପରି ମୁମ୍ବାଇଠାରେ ସଂଜୟ ଗାନ୍ଧି ନ୍ୟାସନାଲ ପାର୍କ ନିର୍ମାଣ କରିବା ନିମନ୍ତେ ଦେଢ଼ ଲକ୍ଷ ଲୋକଙ୍କୁ ବିସ୍ଥାପିତ କରାଯାଇଥିଲା ମାତ୍ର ଦୀର୍ଘ ୨୫ବର୍ଷପରେ ମଧ୍ୟ ସେମାନେ ବର୍ତ୍ତମାନ ବି ଅସ୍ଥାୟୀ ଘରେ ରହିଛନ୍ତି ଏବଂ ଲକ୍ଷାଧିକ ଲୋକ ଭୂମିଶୂନ୍ୟ ହୋଇ ରହିଛନ୍ତି ।

ଭାରତ ଏକ କୃଷି ପ୍ରଧାନ ଦେଶ ଏବଂ କୃଷିର ବିକାଶ ପାଇଁ ସମସ୍ତ କ୍ଷେତ୍ର ଥିଲେ ମଧ୍ୟ ଏହା କରାଇ ଦିଆଯାଇନାହିଁ । ୧୯୪୭ରେ ବ୍ରିଟିଶ ଶାସକ ଭାରତ ଛାଡିବା

ପରେ ବେକାରୀ ଓ ଦାରିଦ୍ର୍ୟ ଯେପରି ଥିଲା ବର୍ତ୍ତମାନ ମଧ୍ୟ ସେହି ଅବସ୍ଥା ରହିଛି । ୧୯୫୦ରେ ଭାରତ ୫୧ ନିୟୁତ ଟନ ଶସ୍ୟ ଉତ୍ପାଦନ କରୁଥିଲା ଏବଂ ବର୍ତ୍ତମାନ ଭାରତ ୨୦୦ ନିୟୁତ ଟନ ଶସ୍ୟ ଉତ୍ପାଦନ କରୁଛି । ପ୍ରାୟ ୩୦ ନିୟୁତ ଟନ ବିକ୍ରୟ ହୋଇ ନପାରି ଗଚ୍ଛିତ ରହୁଛି । ମାତ୍ର ଆଶ୍ଚର୍ଯ୍ୟର କଥା ୪୦ପ୍ରତିଶତ ଲୋକ ଦାରିଦ୍ର୍ୟ ସୀମାରେଖା ତଳେ ରହୁଛନ୍ତି । ୨୦ନିୟୁତ ଟନ ଶସ୍ୟ ମୂଷା ଓ ପୋକ ଦ୍ୱାରା ନଷ୍ଟ ହେଉଛି ।

ଠିକ୍ ସେପରି ସ୍ୱାବଲମ୍ବୀ ଅର୍ଥନୀତି ଓ କୃଷିନୀତି ବିନା ଭାରତର ବିକାଶ ସମ୍ଭବ ନୁହେଁ । ବର୍ତ୍ତମାନ ସମସ୍ତ କ୍ଷେତ୍ରରେ ବିଶ୍ୱବ୍ୟାଙ୍କ ଓ ଆନ୍ତର୍ଜାତିକ ମୁଦ୍ରାପାଣ୍ଠିର ଋଣ ବ୍ୟବହାର କରାଯାଉଛି । ସର୍ଦ୍ଦାର ସରୋବର ପ୍ରକଳ୍ପ ପାଇଁ ମଧ୍ୟ ବିଶ୍ୱବ୍ୟାଙ୍କ ୪୫୦ ନିୟୁତ ଡଲାର ଋଣ ଦେଇଛି । ୧୯୪୭ରୁ ୧୯୯୪ ମଧ୍ୟରେ ବିଶ୍ୱବ୍ୟାଙ୍କ ସମଗ୍ର ପୃଥିବୀରୁ ପ୍ରକଳ୍ପ ନିର୍ମାଣ ବାବଦରେ ଋଣ ପାଇଁ ୬୦୦୦ ଦରଖାସ୍ତ ପାଇଥିଲା । ମାତ୍ର କେବଳ ସର୍ଦ୍ଦାର ସରୋବର ପ୍ରକଳ୍ପକୁ ଛାଡିଦେଲେ ଅନ୍ୟ କୌଣସି ପ୍ରକଳ୍ପକୁ ଋଣ ଦିଆଯାଇନଥିଲା । ଋଣ-ଘିଅ-ମହୁରେ ରହୁଥିବା ଭାରତ ଯେତିକ ଋଣ ଆଣୁଛି ତା'ଠାରୁ ବହୁଗୁଣ ଅଧିକ ଅର୍ଥ ସୁଧ ବାବଦରେ ଦେଉଛି । ୧୯୯୮ରେ ଭାରତ ୪୬୮ ନିୟୁତ ଡ଼ଲାର ଋଣ ବାବଦରେ ଶୁଝିଥିଲା ଯାହା ପ୍ରକୃତ ଋଣ ଠାରୁ ଯଥେଷ୍ଟ ଅଧିକ । ସେହିପରି ୧୯୯୩ରୁ ୧୯୯୮ ମଧ୍ୟରେ ଭାରତ ବିଶ୍ୱବ୍ୟାଙ୍କକୁ ୧୪୭୫ କୋଟି ଡ଼ଲାର ଶୁଝିଛି ।

ବର୍ତ୍ତମାନ କେଉଁ ପ୍ରକଳ୍ପ ସବୁଠାରୁ ବେଶୀ ଲାଭଜନକ ହେବ ତାହା ବିଶ୍ୱବ୍ୟାଙ୍କ ଦେଖୁଛି । ଆନ୍ତର୍ଜାତିକ କ୍ଷେତ୍ରରେ ବର୍ଷକୁ ଡ୍ୟାମ ଶିଳ୍ପ ପାଇଁ ୨୦୦୦ କୋଟି ଡ଼ଲାର ବ୍ୟୟ ହେଉଛି । ତେଣୁ ଆର୍ଥିକ ସହାୟତା ନାମରେ ବିଶ୍ୱବ୍ୟାଙ୍କ ଋଣ ପ୍ରଦାନ କରୁଛି । ଚାଇନା, ଜାପାନ, ମାଲେସିଆ, ଥାଇଲାଣ୍ଡ, ବ୍ରାଜିଲ ଓ ଭାରତ ପରି ରାଷ୍ଟ୍ରକୁ ନିର୍ବାଚିତ କରି ପ୍ରକଳ୍ପ ନିର୍ମାଣକୁ ପ୍ରୋତ୍ସାହିତ କରୁଛି । ଏଥିପାଇଁ ସବୁଠାରୁ ଅଧିକ ଆଦରଣୀୟ ରାଷ୍ଟ୍ରର ମର୍ଯ୍ୟାଦା ଲାଭ କରିଥିବା ଚାଇନାର ଥ୍ରୀ ଜର୍ଜସ ଡ୍ୟାମ୍ ପାଇଁ ମଧ୍ୟ ବିଶ୍ୱବ୍ୟାଙ୍କ ବିପୁଳ ଅର୍ଥ ଋଣ ଦେଇଛି । ଆନ୍ତର୍ଜାତିକ ଡ୍ୟାମ ନିର୍ମାଣ କଂପାନୀ- ରାଜନୈତିକ ନେତା, ମନ୍ତ୍ରୀ- ଅଫିସର / ଅମଲାତନ୍ତ୍ରୀଙ୍କ ଏକ ମହାମିଳନ ବିଶ୍ୱବ୍ୟାଙ୍କ ଅର୍ଥକୁ ସର୍ବଦା ଆମନ୍ତ୍ରଣ କରିଥାଏ ।

ଆନ୍ତର୍ଜାତିକ ଟେଣ୍ଡର ମାଧ୍ୟମରେ ବିଭିନ୍ନ ବହୁରାଷ୍ଟ୍ରୀୟ କମ୍ପାନୀ ଦ୍ୱାରା ନିର୍ମିତ ଯନ୍ତ୍ରାଂଶ କ୍ରୟ କରିବା ପାଇଁ ଚୁକ୍ତି ହୋଇଥାଏ । ଯେପରି ସର୍ଦ୍ଦାର ସରୋବର ପ୍ରକଳ୍ପ

ପାଇଁ ଆବଶ୍ୟକ ଟରବାଇନଗୁଡ଼ିକ ଯୋଗାଇବା ନିମନ୍ତେ ଜାପାନର ସୁମିତୋମୋ କର୍ପୋରେସନ ସହ ଚୁକ୍ତି ହୋଇଛି । ଏହି ପ୍ରକଳ୍ପ ଆରମ୍ଭ ହେବା ସମୟରେ ସମୁଦାୟ ଖର୍ଚ୍ଚ ପରିମାଣ ୬୦୦୦କୋଟି ଟଙ୍କା ଧାର୍ଯ୍ୟ କରାଯାଇଥିଲା ମାତ୍ର ତାହା ବଢ଼ି ୨୦,୦୦୦ କୋଟି ଟଙ୍କାରେ ପହଞ୍ଚିଛି । ତେବେ ପ୍ରକଳ୍ପ ଶେଷ ବେଳକୁ ଏହା ୪୦ହଜାର କୋଟି ଟଙ୍କାରେ ପହଞ୍ଚିବ ବୋଲି ଦେଖାଯାଉଛି ଯାହା ଗତ ୫୦ବର୍ଷ ମଧ୍ୟରେ ସମୁଦାୟ ଜଳସେଚନ ବଜେଟର ୫୦ଭାଗ । ନଦୀବନ୍ଧ ନିର୍ମାଣ ଶେଷ ହୋଇଗଲେ ବିଦ୍ୟୁତ ଓ ଜଳଶୁଳ୍କ ଭୟଙ୍କର ଭାବେ ବଢ଼ିବ ଏବଂ କୃଷକମାନେ ସବୁଠାରୁ ଅଧିକ କ୍ଷତିଗ୍ରସ୍ତ ହେବେ ।

ନର୍ମଦା ନଦୀ ଉପରେ ନିର୍ମିତ ବାର୍ଗି ଡ୍ୟାମ ୧୯୯୦ରେ ଶେଷ ହୋଇଥିଲା ଏବଂ ଯାହା ବଜେଟ କରାଯାଇଥିଲା ତାହାର ୧୦ ଗୁଣ ଅଧିକ ଖର୍ଚ୍ଚ କରାଯାଇଥିଲା । ୧୦୧ଟି ଗାଁ ନିଶ୍ଚିହ୍ନ ହୋଇଯାଇଥିବା ବେଳେ ୧୬୦ଟି ଗାଁ ଅର୍ଦ୍ଧ ଜଳମଗ୍ନ ଥିଲା । ସମୁଦାୟ ୧,୧୪,୦୦୦ଲୋକ ବାସଚ୍ୟୁତ ହୋଇଥିଲେ । ମାତ୍ର ବର୍ତ୍ତମାନ ଦେଖାଯାଉଛି ଯେତେକ ଅଞ୍ଚଳ ଏହି ପ୍ରକଳ୍ପ ଦ୍ୱାରା ଜଳମଗ୍ନ ହୋଇଛି ଠିକ୍ ସେତିକି ଅଞ୍ଚଳ ଏହି ପ୍ରକଳ୍ପ ଦ୍ୱାରା ଜଳସେଚିତ ହେଉଛି ଅର୍ଥାତ ଯାହା ହିସାବ କରାଯାଇଥିଲା ସେଥିରୁ ମାତ୍ର ୫ ପ୍ରତିଶତ ଜମି ଜଳସେଚିତ ହୋଇଛି ।

□□□

# ସଂସ୍କୃତିର ଅପମୃତ୍ୟୁ

ଜୀବ ଜଗତର ସୃଷ୍ଟି ଜଳ ମଧ୍ୟରୁ । ଜଳ ନଥିଲେ ପୃଥିବୀରେ ଜୀବ ସତ୍ତା ମଧ୍ୟ ନଥାନ୍ତା । ଜଳ ହିଁ ଜୀବନ । ପ୍ରତ୍ୟେକ ଅଣୁଜୀବଠାରୁ ଆରମ୍ଭ କରି ବୃହଦ୍‌କାୟ ଜୀବ ପ୍ରଭୃତିଙ୍କ ସୃଷ୍ଟି ଜଳ ଯୋଗୁ । ଜଳ ଯେପରି ସୃଷ୍ଟିକର୍ତ୍ତା, ସେପରି ବିନାଶକର୍ତ୍ତା ମଧ୍ୟ । ପୃଥିବୀର ୭୧ଭାଗ ଜଳ ଥିଲେ ମଧ୍ୟ ଏଥିରୁ ମାତ୍ର ୨.୫ ପ୍ରତିଶତ ଜଳ ପାନୀୟ ଉପଯୋଗୀ ।

ସମଗ୍ର ପୃଥିବୀରେ ମିଳୁଥିବା ଜଳର ପରିମାଣ ହେଉଛି ୧୪୦କୋଟି କ୍ୟୁବିକ୍ କିଲୋମିଟର । ସେଥିରୁ ମଧୁର ଜଳର ପରିମାଣ ୩୬ ନିୟୁତ କ୍ୟୁବିକ କିଲୋମିଟର । ମଧୁର ଜଳର ପରିମାଣ ୨.୫ ପ୍ରତିଶତ ମଧ୍ୟରୁ ୭୯% ଅର୍ଥାତ୍ ୨୮ନିୟୁତ କ୍ୟୁବିକ୍ କିଲୋମିଟର ଜଳ ବରଫ ଆକାରରେ ଏବଂ ୨୧% ଅର୍ଥାତ୍ ୮ନିୟୁତ କ୍ୟୁବିକ୍ କିଲୋମିଟର ଜଳ ତରଳ ଆକାରରେ ନଦୀ, ହ୍ରଦ, ସାଗର ଭୂତଳ ଓ ପୁଷ୍କରିଣୀରେ ରହିଥାଏ । ପୃଥିବୀରେ ରହିଥିବା ଜଳ ମଧ୍ୟରୁ ୫୨ଭାଗ ସମୁଦ୍ରରେ ଓ ହ୍ରଦରେ, ୮ଭାଗ ବାୟୁମଣ୍ଡଳରେ, ୩୮ଭାଗ ମାଟିରେ, ୧ ଭାଗ ନଦୀଗୁଡିକରେ ଓ ଆଉ ଏକ ଭାଗ ଜୀବଜଗତର ଶରୀର ମଧ୍ୟରେ ଥାଏ । ସମଗ୍ର ପୃଥିବୀର ପ୍ରାୟ ୭୦୦ କୋଟି ଲୋକଙ୍କ ମଧ୍ୟରୁ ୨୦୦ କୋଟିରୁ ଅଧିକ ଲୋକ ଭୂତଳ ଜଳ ଉପରେ ନିର୍ଭର କରିଥାନ୍ତି । ବିଭିନ୍ନ ସହରାଞ୍ଚଳର ଲୋକେ ସାଧାରଣତଃ ନଦୀ ଜଳ ଉପରେ ନିର୍ଭର କରିଥାନ୍ତି । ପୃଥିବୀରେ ସଂପ୍ରତି ୧୨୫ କୋଟି ଲୋକ ଜଳ ପାଇବାରୁ ବଞ୍ଚିତ ହେଉଥିବା ବେଳେ କେବଳ ଭାରତରେ ୨୦କୋଟି ଲୋକ ପାଣି ଅଧିକାରରୁ ବଞ୍ଚିତ । ୨୦୫୦ ବେଳକୁ ପୃଥିବୀର ଅର୍ଦ୍ଧାଧିକ ଲୋକ ଅର୍ଥାତ ପ୍ରାୟ ୪୦୦କୋଟି ଲୋକ ଜଳ ପିଇବାରୁ ବଞ୍ଚିତ ହେବେ ବୋଲି ଆଶଙ୍କା କରାଯାଉଛି । ଅପରପକ୍ଷେ ସୁଷମ ଜଳର ଅଭାବ, ପରିବେଶ ପ୍ରଦୂଷଣ, ଦୂଷିତ କାରଖାନା ଯୋଗୁ ସଂକ୍ରମିତ ଜଳର ପ୍ରଭାବରେ ମରୁଥିବା ଲୋକ ସଂଖ୍ୟା ବିଶ୍ୱରେ ବାର୍ଷିକ ୧କୋଟିରୁ ଅଧିକ । କେବଳ ୨୦ହଜାର ଶିଶୁ ଦୈନିକ ଜଳଜନିତ ସଂକ୍ରମଣରୁ ପ୍ରାଣ ହରାଇଥାନ୍ତି ।

ଜଳର ବିଶେଷ ତାପ (Specific heat) ଅଧିକ ହୋଇଥିବାରୁ ଏହାର ତାପମାତ୍ରା ପରିବର୍ତ୍ତନ ପାଇଁ ଅଧିକ ତାପର ଆବଶ୍ୟକ ହୋଇଥାଏ । ସୌରତାପ ଯୋଗୁ ଜଳଭାଗ ଓ ସ୍ଥଳଭାଗ ମଧ୍ୟରେ ପାର୍ଥକ୍ୟ ପରିଲକ୍ଷିତ ହୋଇଥାଏ ଏବଂ ତାପମାତ୍ରାରେ ଭାରସାମ୍ୟ ରହିଥାଏ । ପୁଣି ଜଳର ଗୁପ୍ତ ତାପ (Latent heat) ଯଥେଷ୍ଟ ଅଧିକ ହୋଇଥିବାରୁ ଜଳର ବାଷ୍ପୀକରଣ ନିମନ୍ତେ ଅଧିକ ସୌରତାପ ଆବଶ୍ୟକ ହୋଇଥାଏ । ଫଳରେ ସୌର କରଣର ଏକ ସିଂହଭାଗ ତାପ ଗ୍ରହଣ ବା ଆହରଣ କରିବାରେ ଗଚ୍ଛିତ ଜଳ ସକ୍ଷମ ହୋଇଥାଏ । ଫଳରେ ପୃଥିବୀ ପୃଷ୍ଠରେ ତାପମାତ୍ରାର ଭାରସାମ୍ୟ ରହିଥାଏ ।

ପୃଥିବୀ ପୃଷ୍ଠରେ ସୃଷ୍ଟି ହେଉଥିବା ଦୂଷିତ ପରିବେଶର ଦୂରୀକରଣ ଦିଗରେ ଜଳର ଭୂମିକା ମଧ୍ୟ ଯଥେଷ୍ଟ ଥାଏ । କାକର ରୂପରେ ଅଧିକାଂଶ ଅଞ୍ଚଳରେ ପରିବେଶ ମଧ୍ୟ ବିଶୋଧିତ ହୋଇଥାଏ । ଏଣୁ ଜଳ ବୋଧ ହୁଏ ଏକମାତ୍ର ଦ୍ରବ୍ୟ ଯଦ୍ଵାରା ପୃଥିବୀରେ ଜୀବଜଗତ ଓ ସବୁଜ ପରିବେଶ ସୃଷ୍ଟି ସମ୍ଭବ ହୋଇପାରିଛି ।

ପ୍ରତିବର୍ଷ ୨୨ ମାର୍ଚ୍ଚରେ ବିଶ୍ୱରେ 'ଜଳ ଦିବସ' ପାଳିତ ହେଉଥିବା ସତ୍ତ୍ୱେ ଜଳର ବାସ୍ତବ ଅବସ୍ଥା ପ୍ରତି କେହି ଧ୍ୟାନ ଦେଇ ନଥାନ୍ତି । ଜଳକୁ ଏକ ବ୍ୟାବସାୟିକ ସାମଗ୍ରୀ ଭାବେ ବିଚାର କରି ଯେପରି ପୁଞ୍ଜିପତିମାନଙ୍କ ଏକଚାଟିଆ ବ୍ୟବସାୟୀମାନଙ୍କ ହାତକୁ ଟେକି ଦିଆଯାଉଛି ତାହା ବାସ୍ତବରେ ମାନବାଧିକାର ଉଲ୍ଲଂଘନର ଏକ ଜ୍ୱଳନ୍ତ ଉଦାହରଣ ।

ଜଳର ଅନ୍ୟ ନାମ ଜୀବନ ଏବଂ ପୃଥିବୀରେ ବଞ୍ଚିବାର ଅଧିକାର ପ୍ରତ୍ୟେକ ଜୀବଜନ୍ତୁଙ୍କ ନିକଟରେ ଥିବା ସତ୍ତ୍ୱେ ବଳପୂର୍ବକ ଅର୍ଥନୀତିର ଜଗତୀକରଣ ଆଳରେ ଜଳର ଅଧିକାରକୁ ଛଡାଇ ନିଆଯାଉଛି । ଅଧିକାଂଶ ରାଷ୍ଟ୍ରରେ ଘରୋଇ ବହୁରାଷ୍ଟ୍ରୀୟ ଜଳ କମ୍ପାନୀ ହାତରେ ଜଳ ବଣ୍ଟନ ଦାୟିତ୍ୱ ପ୍ରଦାନ କରାଯାଇଥିବା ବେଳେ ଅନେକ ବହୁରାଷ୍ଟ୍ରୀୟ କମ୍ପାନୀ ଏପରିକି କେବଳ ସହରରେ ଜଳର ପୂର୍ଣ୍ଣ ମାଲିକ ସାଜିଛନ୍ତି । ଏ କ୍ଷେତ୍ରରେ ବିଶ୍ୱରେ ଏକ ମାରାତ୍ମକ ପ୍ରକ୍ରିୟା ଦେଖାଦେଇଛି । ସରକାରୀ ସ୍ତରରେ ଚାପ ପକାଇ ଆନ୍ତରାଷ୍ଟ୍ରୀୟ ପୁଞ୍ଜିପତିମାନେ ଜଳ ବ୍ୟବସାୟକୁ ଆବୋରି ବସିବା ପରି ହୀନ ଉଦାହରଣ ଆଜି ଅଧିକାଂଶ ରାଷ୍ଟ୍ରରେ ଦେଖାଯାଉଛି ।

ପ୍ରକୃତି ଉପରେ ବହୁରାଷ୍ଟ୍ରୀୟ କଂମ୍ପାନୀଗୁଡିକର ମାତ୍ରାଧିକ ଶୋଷଣ, ଜୀବନକୁ ନେଇ ବ୍ୟବସାୟ ମୁନାଫା ସୃଷ୍ଟିର ପୈଶାଚିକ କାମନା ଶେଷରେ ଅନେକ ଗଣତାନ୍ତ୍ରିକ ରାଷ୍ଟ୍ରରେ ମଧ୍ୟ ଜଳ ବଣ୍ଟନ କ୍ଷେତ୍ରରେ ବହୁରାଷ୍ଟ୍ରୀୟ କମ୍ପାନୀଗୁଡିକର ହାତ ଟାଣ

କରିବାରେ ସଫଳ ହୋଇଛି । ଅନେକ ଆଫ୍ରିକୀୟ ଓ ଏସୀୟ ରାଷ୍ଟ୍ରରେ ଜଳ ବଣ୍ଟନ କରିବାର ଦାୟିତ୍ୱ ନେଇଛନ୍ତି ୟୁରୋପୀୟ କମ୍ପାନୀମାନେ । ଏଥିପାଇଁ ସେମାନେ ପ୍ରାଥମିକ କ୍ଷେତ୍ର ତିଆରି କରି ଜଳ ବଣ୍ଟନ ସମେତ ଅନେକ ରାଷ୍ଟ୍ରୀୟ ବ୍ୟାପାରରେ ମଧ୍ୟ ହସ୍ତକ୍ଷେପ କରିଥାନ୍ତି ।

ପ୍ରକୃତିର ମହାର୍ଘ୍ୟ ଅବଦାନ ଜଳକୁ ଏପରି ଏକ ପୁଞ୍ଜିର ସାମଗ୍ରୀ ଭାବେ ଯେ ତିଆରି କରାଯାଇପାରିବ ଏହା କାହାରି ଧାରଣାରେ ନଥିଲା । ସଂପ୍ରତି ବିଶ୍ୱର ଅର୍ଦ୍ଧାଧିକ ଅଞ୍ଚଳରେ ପ୍ଲାଷ୍ଟିକ୍ ଜଳ ସଂସ୍କୃତି ଦେଖିବାକୁ ମିଳୁଛି ଏବଂ କେତେକ ଘରୋଇ ଜଳ କମ୍ପାନୀ ପ୍ଲାଷ୍ଟିକ୍ ବୋତଲ ବା ପଲିଥିନ୍‌ରେ ଜଳ ବିକୁଥିବା ଦେଖାଯାଉଛି । ଏହା ଦ୍ୱାରା ଏକ ହୀନ ସଂସ୍କୃତି ସୃଷ୍ଟି ହେଉଛି ଏବଂ ଜଳକୁ ବିନା ମୂଲ୍ୟରେ ଅତିଥି / ଆଗନ୍ତୁକ / ଅପରିଚିତ ବ୍ୟକ୍ତିକୁ ଦେବା ସଂସ୍କୃତି ହଟି ଯାଉଛି । ଜୀବନର ଏହି ଶ୍ରେଷ୍ଠ ଆବଶ୍ୟକତା ଯେ ଶେଷରେ ପୁଞ୍ଜିବାଦୀ ଯୁଗର ମୁନାଫା ଆଦାୟ କ୍ଷେତ୍ରରେ ପ୍ରମୁଖ ଦ୍ରବ୍ୟ ହେବ ଏହା ଆଶ୍ଚର୍ଯ୍ୟବୋଧ ହେଉଛି । ତେବେ ବହୁରାଷ୍ଟ୍ରୀୟ କମ୍ପାନୀ ଜାଲରେ ବିଶ୍ୱର ଜଳସଂପଦ ଯେ ବନ୍ଦୀ ହୋଇଛି ଏହା ସ୍ୱୀକାର କରିବାକୁ ହେବ । ଆଗାମୀ ଶତାବ୍ଦୀର ଲଢ଼େଇ ଜଳ ପାଇଁ ହେବ ବୋଲି ଆଶଙ୍କା ପ୍ରକାଶ କରାଯାଉଥିବା ବେଳେ ଜଳର ବ୍ୟାପକ ଅଭାବ, ଆନ୍ତର୍ଜାତିକ ନଦୀଜଳ ବଣ୍ଟନ ବିବାଦ ଇତ୍ୟାଦି କାରଣରୁ ଏହି ଆଶଙ୍କାର ସତ୍ୟତା ଅନୁଭବ କରାଯାଉଛି ।



# ନାଇଜେରିଆ ଓ କେନ୍ ସାରୋୱିବା

ଏକଦା ରୂପା ଓ ତେଲର ସଂପଦରେ ଐଶ୍ୱର୍ଯ୍ୟଶାଳୀ ରାଷ୍ଟ୍ର ନାଇଜେରିଆ ଏବେ ଅର୍ଥନୈତିକ ବିଧ୍ୱସ୍ତର ଶିକାର ହୋଇଛି । ରାଷ୍ଟ୍ରରେ ଶତାଧିକ ବିଦ୍ରୋହୀ ଗୋଷ୍ଠୀର ଉତ୍‌ଥାନ, ବହୁରାଷ୍ଟ୍ରୀୟ ପୁଞ୍ଜିପତିଙ୍କ ନାଇଜେରିଆ ଅର୍ଥନୀତିରେ ପ୍ରାଧାନ୍ୟ ବିସ୍ତାର ଏହି ରାଷ୍ଟ୍ରର ଗୌରବକୁ ଭୂଲୁଣ୍ଠିତ କରିଛି । ୧୯୯୩ରୁ ୪୦ଲକ୍ଷ ଲୋକଙ୍କୁ ହତ୍ୟା, ୧କୋଟି ୨୦ଲକ୍ଷ ଲୋକ ଗୃହଶୂନ୍ୟ, ୩କୋଟି ଲୋକଙ୍କ ଦାଣ୍ଡର ଭିକାରୀ ହେବା ଘଟଣାକୁ ନେଇ ଦେଶର ଅବସ୍ଥା ସଂପର୍କରେ ସ୍ପଷ୍ଟ ଚିତ୍ର ମିଳୁଛି । ନାଇଜେରିଆରେ ତୈଳ ଉତ୍ପାଦନ ପାଇଁ ବହୁରାଷ୍ଟ୍ରୀୟ ତୈଳ କମ୍ପାନୀ ସେଲ ଓ ଏସ୍‌କନ ମଧ୍ୟରେ ସଂଘର୍ଷ ଶେଷରେ ଅନେକ ବିଦ୍ରୋହୀ ଶକ୍ତିକୁ ସେଠାରେ ଜନ୍ମ ଦେଉଛି । ଫଳ ଏହା ହୋଇଛି ଯେ ପ୍ରଖ୍ୟାତ ସଂଗ୍ରାମୀ ତଥା ବହୁରାଷ୍ଟ୍ରୀୟ କମ୍ପାନୀ ବିରୋଧରେ ଆନ୍ଦୋଳନ ଚଳାଇ ରଖିଥିବା ନେତା କେନ ସାରୋ ୱିବାଙ୍କୁ ହତ୍ୟା କରାଯିବା ସହ ଅନ୍ୟାନ୍ୟ ୮ଜଣ ନେତାଙ୍କୁ ହତ୍ୟା କରିବା ଘଟଣାରେ ତୈଳ ଜଗତର ବହୁରାଷ୍ଟ୍ରୀୟ କମ୍ପାନୀ, ସାମରିକ ଶାସକ, ନିଶା ମାଫିଆ ଓ ଯୁଦ୍ଧ ମାଫିଆଙ୍କ ଜାଲ ମଧ୍ୟରେ ନାଇଜେରିଆର ଗତିପଥ ସଂପୂର୍ଣ୍ଣ ଅଂଧାର ହୋଇଯାଇଛି ।

ସେଲ ଓ ଅନ୍ୟାନ୍ୟ ବହୁରାଷ୍ଟ୍ରୀୟ କମ୍ପାନୀଗୁଡ଼ିକର ପ୍ରାକୃତିକ ସଂପଦ ଲୁଣ୍ଠନ, ଜଳ ସଂପଦର ମାତ୍ରାଧିକ ଦୁରୂପଯୋଗ, ୫ରୁ ଅଧିକ ନଦୀଜଳକୁ ବିଷାକ୍ତ କରାଯିବା ଘଟଣା ଯୋଗୁ ସେଲ ଓ ଅନ୍ୟାନ୍ୟ କମ୍ପାନୀ ବିରୋଧରେ ଦୁର୍ବାର ଆନ୍ଦୋଳନ ଗଢ଼ି ଥିଲେ କେନ୍ ସାରୋୱିବା । ଅପରାଧୀ ମେଣ୍ଟ ୱିବାଙ୍କ ଜନପ୍ରିୟତାକୁ ସହ୍ୟ କରି ନପାରି ୧୯୯୫ ନଭେମ୍ବରରେ ତାଙ୍କୁ ଫାଶୀ ଦଣ୍ଡ ଦେଇଥିଲା । ସେଲ୍ ଓ ଅନ୍ୟାନ୍ୟ କମ୍ପାନୀଗୁଡ଼ିକର ଲୋଲୁପ ଦୃଷ୍ଟିରୁ ନଦୀବନ୍ଧ, ଜଙ୍ଗଲ ସଂପଦ, ଜଳବାୟୁ, ସବୁଜ ସଂପଦ, ତୈଳ ସଂପଦ, ଉପକୂଳ ସୁରକ୍ଷା ବଳୟ, ମୃତ୍ତିକା ସଂରକ୍ଷଣ ଓ ଜଳ ସଂପଦ ବାଦ ପଡ଼ିନଥିଲା । ସେଲ୍‌ର ଠିକାଦାରମାନେ ହଜାର ହଜାର ଏକର ଜଙ୍ଗଲରେ ନିଆଁ ଲଗାଇ ଦେବା ସହ ଦୂଷିତ ତୈଳର ସଂରକ୍ଷଣ ପ୍ରତି ଧ୍ୟାନ ନ ଦେବାରୁ ପର୍ଯ୍ୟାପ୍ତ

ପରିମାଣର ଦୂଷିତ ତୈଳ ନଦୀ ଓ ସାଗରରେ ମିଶିବାରୁ ବ୍ୟାପକ ପରିମାଣ ଅଞ୍ଚଳ ବିଷାକ୍ତ ହୋଇଯାଇଥିଲା । ନାଇଜେରିଆର ଓଗୋନି ଅଞ୍ଚଳରେ ମିଳୁଥିବା ଜଳରେ ପର୍ଯ୍ୟାପ୍ତ ପରିମାଣର ହାଇଡ୍ରୋକାର୍ବନ ମିଶିଥିବା ଜଣାଯାଇଥିଲା । ଏକ ପରୀକ୍ଷାରୁ ପାନୀୟ ଜଳରେ ୧୮ ପିପିଏମ (ପାର୍ଟସେ ପର୍ ମିଲିଅନ) ହାଇଡ୍ରୋକାର୍ବନ ଥିବା ପ୍ରମାଣିତ ହେବାପରେ ସେଠାରେ ପାନୀୟ ଜଳ ବିପଦପୂର୍ଣ୍ଣ ବୋଲି ଘୋଷଣା କରାଯାଇଥିଲା । ଏହାକୁ କେନ୍ଦ୍ରକରି ଓଗୋନି ପ୍ରଦେଶରେ ଓ୍ୱିବାଙ୍କ ନେତୃତ୍ୱରେ ପ୍ରବଳ ଜନ ଆନ୍ଦୋଳନ ମୁଣ୍ଡ ଟେକିଥିଲା । ଏହା ବ୍ୟତୀତ ତୈଳ ଶିଳ୍ପର ମାତ୍ରାଧିକ ପ୍ରଭାବରେ କେନାଲ, ପୋଖରୀ ଆଦି ମଧ୍ୟ ନଷ୍ଟ ହୋଇଯାଇଥିଲା ।

ନାଇଜେରିଆର ସାମରିକ ଶାସକ ସାଧାରଣତଃ ସର୍ବଦା ଆମେରିକାର ହାତ କଣ୍ଢେଇ ହୋଇ ରହି ଆସିଥାନ୍ତି । ରାଷ୍ଟ୍ରରେ ଦାରିଦ୍ର୍ୟ ପରିମାଣ ୪୬ ପ୍ରତିଶତ ବୃଦ୍ଧି ପାଇଥିବା ସତ୍ତ୍ୱେ ସରକାରର ବହୁରାଷ୍ଟ୍ରୀୟ କମ୍ପାନୀ ପ୍ରୀତି ଦୂରେଇ ନାହିଁ ଏବଂ ଅନେକ ବହୁରାଷ୍ଟ୍ରୀୟ କମ୍ପାନୀକୁ ତୈଳ ଖନନ, ରୂପା ଉତ୍ତୋଳନ କାର୍ଯ୍ୟପାଇଁ ଅନୁମତି ଦିଆଯାଇଛି ।

ସେଲ କମ୍ପାନୀ ବାର୍ଷିକ ୧୧୦୦କୋଟି ଡଲାରର ବ୍ୟବସାୟ କରୁଥିବା ସତ୍ତ୍ୱେ ଏହି କମ୍ପାନୀ ନାଇଜେରିଆର ବିକାଶ ନିମନ୍ତେ ଅର୍ଥ ବ୍ୟୟ କରୁନାହିଁ । ଦୂଷିତ ଜଳ ପିଇ ୧୫ଲକ୍ଷରୁ ଅଧିକ ଲୋକ ପଂଗୁ ହୋଇଯାଇଥିବା ବେଳେ ହାରାହାରି ୩୦୦ ବିଲିୟନ ଲିଟର ଜଳ ବାର୍ଷିକ ନଷ୍ଟ କରାଯାଉଛି । ଜଳ ସଂପଦ ପରି ମହାର୍ଘ ସଂପଦ ନଷ୍ଟ ହେବା ଯୋଗୁ ଏହାର ପ୍ରଭାବ ନାଇଜେରିଆର ୧୫ରୁ ଅଧିକ ରାଜ୍ୟ ଉପରେ ପଡୁଛି । ଏପରିକି ତୈଳପ୍ଲାଣ୍ଟ୍‌ରୁ ଅବିରତ ଦୂଷିତ ତୈଳ ନିର୍ଗତ ହେବା ଯୋଗୁ ବାର୍ଷିକ ୧୫୦୦୦ ଏକର ଚାଷ ଜମି ନଷ୍ଟ ହୋଇଯାଉଛି । ତଥାପି କମ୍ପାନୀ ବିରୋଧରେ ସରକାର ପଦକ୍ଷେପ ନିଆ ଯାଇପାରି ନାହିଁ ।

ଜଳରେ ଅଶୋଧିତ ତୈଳ ମିଶି ନଦୀଜଳ ଓ ଭୂଗର୍ଭସ୍ଥ ଜଳ ନଷ୍ଟ ହେଉଥିବାରୁ ନାଇଜେରିଆରେ କେବଳ ମାଛ ବ୍ୟବସାୟରେ କ୍ଷତି ଘଟୁଛି ୧କୋଟି ଡ଼ଲାର । କାରଣ ନଦୀ ଓ ହ୍ରଦଗୁଡିକରେ ମାଛମାନେ ବଞ୍ଚୁ ନାହାନ୍ତି । ପୋଖରୀ ଜଳ ମଧ୍ୟ ଦୂଷିତ ହେବାରୁ ଏହାର ପ୍ରଭାବରେ ଦେଶରେ ମାଛ ବ୍ୟବସାୟ ଚରମ ବାଧାପ୍ରାପ୍ତ ହୋଇଛି ।

ଅପରପକ୍ଷେ ନାଇଜେରିଆରେ ଯେକୌଣସି ପ୍ରକାର ଜନ ଆନ୍ଦୋଳନକୁ ଦବାଇବା ପାଇଁ ସରକାରଙ୍କୁ ସେଲ୍ କମ୍ପାନୀ ପ୍ରଭୂତ ଅର୍ଥ ପ୍ରଦାନ କରୁଛି । ବହୁରାଷ୍ଟ୍ରୀୟ କମ୍ପାନୀର ପ୍ରଭାବ ଏଥିରୁ ସହଜରେ ଅନୁମେୟ ।



# ଡୋମିକୋ ଓ ପେଟ୍ରେଲା

ଜଳର ଘରୋଇକରଣ ବିରୋଧରେ ବିଶ୍ୱରେ ବ୍ୟାପକ ଜନ ଆନ୍ଦୋଳନ ଦେଖା ଦେଲାଣି । ଖୋଦ୍ ଫ୍ରାନସ୍‌ରେ ମଧ୍ୟ ଜଳର ଘରୋଇକରଣ ବିରୋଧରେ ଜନ ବିଦ୍ରୋହ ଦେଖାଦେଇଛି । ଅନେକ ଆନ୍ତର୍ଜାତିକ ମଞ୍ଚରେ ବିଶ୍ୱର ବହୁ ସ୍ୱେଚ୍ଛାସେବୀ, ଜଳର ଘରୋଇକରଣ ବିରୋଧରେ ସ୍ୱରଉତ୍ତୋଳନ କରୁଛନ୍ତି । ବିଶ୍ୱବ୍ୟାଙ୍କ ଓ ଆନ୍ତର୍ଜାତିକ ମୁଦ୍ରାପାଣ୍ଠି ପ୍ରରୋଚିତ ଚୁକ୍ତିଗୁଡିକ ମୂଳରେ ରହିଥିବା ମୁନାଫା ଅର୍ଜନର ଲକ୍ଷ୍ୟକୁ ସର୍ବ ସାଧାରଣରେ ପ୍ରକାଶ କରିବା ପାଇଁ ଅନେକ ସାହିତ୍ୟ- ସଂସ୍କୃତି ସଂଗଠନ ମଧ୍ୟ ଆଗେଇ ଆସିଲେଣି । ବିହନର ମାଲିକାନା ମନ୍‌ସାଣ୍ଟୋ ହାତରେ ବିଶ୍ୱବ୍ୟାପୀ ଛାଡି ଦେବାପରି ଜଳର ମାଲିକାନାକୁ ମଧ୍ୟ ଭିଭେଣ୍ଡି, ବାଇ ୱାଟର, ସୁଏଜ, ଆମେରିକାନ ୱାଟର ୱାର୍କସ, ଅଜରିକସ, ପେପସୀ, କୋକାକୋଲା, ପ୍ରଭୃତି କମ୍ପାନୀ ହାତରେ ଟେକି ଦିଆଯାଉଥିବା ହେତୁ ପୃଥିବୀ ଯେ ବାସ୍ତବରେ ଚରମ ସଂକଟ ମଧ୍ୟକୁ ଗତି କରିଛି ଏହା ସ୍ପଷ୍ଟ ହୋଇଛି । ଜଳର ଘରୋଇକରଣ ବିରୋଧରେ ଅନେକ ଆନ୍ତର୍ଜାତିକ ଫୋରମ ମଧ୍ୟ ପ୍ରତିଷ୍ଠା ହୋଇଛି । ଜଳକୁ ମାନବାଧିକାର ପ୍ରସଂଗ ସହ ଯୋଡ଼ି ଦିଆଯାଇ ଆନ୍ଦୋଳନକୁ ଅଧିକ ବ୍ୟାପ୍ତ କରାଯାଉଛି ।

କଲମ୍ବିଆ ସରକାରଙ୍କ ବହୁରାଷ୍ଟ୍ରୀୟ କମ୍ପାନୀ ପ୍ରୀତି ଏବଂ ଦେଶରେ ଜଳର ଘରୋଇକରଣ ପ୍ରତିବାଦରେ ଦେଶବ୍ୟାପୀ ନେତୃତ୍ୱ ନେଉଥିବା କଲମ୍ବିଆର ଜନନେତା କିମି ପର୍ଣ୍ଣିଆ ଡ଼ୋମିକୋ ହଠାତ୍ ୨୦୦୧ ଜୁନ ୨ ତାରିଖରେ ହୋଇଥିବା ଏକ ଆନ୍ଦୋଳନରେ ନିଖୋଜ ହୋଇ ଯାଇଥିଲେ । ତାଙ୍କୁ କଲମ୍ବିଆର ଅର୍ଦ୍ଧସାମରିକ ବାହିନୀ ଅପହରଣ କରି ନେଇଥିଲେ ବୋଲି ଅଭିଯୋଗ ହୋଇଥିଲା । ମାତ୍ର ଶେଷରେ ତାଙ୍କୁ ହତ୍ୟା କରାଯାଇଛି ବୋଲି ଖବର ପ୍ରକାଶ ପାଇଲା । ସେହିପରି କଲମ୍ବିଆର ଆର୍ଥର ମାନୁଏଲ, ୟୁରୋପର ରିକୋର୍ଡୋ ପେଟ୍ରେଲା ପ୍ରମୁଖ ନେତାଗଣ ବିଶ୍ୱରେ ଜଳ ଆନ୍ଦୋଳନକୁ ଆଗେଇ ନେଇଛନ୍ତି ।

ବିଶ୍ୱରେ ଶିଳ୍ପ ସଭ୍ୟତାର ଅହେତୁକ ବୃଦ୍ଧି ଯୋଗୁ ବହୁରାଷ୍ଟ୍ରୀୟ କମ୍ପାନୀମାନେ ଜଳକୁ ବ୍ୟବହାର କରିବା ପାଇଁ ଆଗେଇ ଆସିଛନ୍ତି । କୋଟି କୋଟି ନାଗରିକଙ୍କ ଜଳର ଅଧିକାରକୁ ମଧ ସେମାନେ ଛଡାଇ ନେଇଛନ୍ତି ।

ବିକଶିତ ରାଷ୍ଟ୍ରଗୁଡିକରେ କାର୍/ମୋଟର ସାଇକେଲ ରେସିଂ ନାମରେ ଅପର୍ଯ୍ୟାପ୍ତ ପେଟ୍ରୋଲ୍ ଓ ଡ଼ିଜେଲ୍ ନଷ୍ଟ କରାଯାଉଥିବା ବେଳେ ୟୁରୋପୀୟ ରାଷ୍ଟ୍ରଗୁଡିକ ସୁଇମିଂ ପୁଲ ନାମରେ ମଧ ପ୍ରଭୂତ ଜଳ ନଷ୍ଟ କରୁଛନ୍ତି । କେବଳ କାଲିଫର୍ଣ୍ଣିଆରେ ପ୍ରାୟ ୬ଲକ୍ଷ ସୁଇମିଂ ପୁଲ୍ ଥିବାବେଳେ ଆମେରିକାରେ ୧୧ଲକ୍ଷ, କାନାଡ଼ାର ୨ଲକ୍ଷ, ଫ୍ରାନ୍ସ୍‌ରେ ୧୦ଲକ୍ଷ ସୁଇମିଂ ପୁଲ ରହିଛି । ପିଇବା ପାଇଁ କୋଟି କୋଟି ଲୋକଙ୍କୁ ପାଣି ଟୋପାଏ ମିଳୁ ନଥିବା ବେଳେ ଶିଳ୍ପୋନ୍ନତ ରାଷ୍ଟ୍ରଗୁଡିକ ଆଭିଜାତ୍ୟର ଦ୍ୱାହି ଦେଇ ଯେପରି ପାଣିର ଦୁରୁପଯୋଗ କରୁଛନ୍ତି ତାହା ଅସହ୍ୟ ।

୧୯୪୮ରେ ଘୋଷିତ ଜାତିସଂଘ ମାନବାଧିକାର ଘୋଷଣାନାମା ସାରା ବିଶ୍ୱରେ ଜୋରଦାର ପାଳିତ ହେଉଥିଲେ ମଧ ଜଳର ଅଧିକାର ଛଡାଇ ନେବା ପରି ଏକ ମର୍ମନ୍ତୁଦ ପ୍ରକ୍ରିୟା ବିରୋଧରେ କଠୋର ସଂଗ୍ରାମ ସୃଷ୍ଟି ହେବା ଦେଖାଯାଉନାହିଁ ।

ଗତ ୫୦ ବର୍ଷ ମଧରେ ଘରୋଇ ପୁଞ୍ଜିର ଅଧିକାର ୧୦୦ ପ୍ରତିଶତ ବୃଦ୍ଧି ପାଇଛି । ଘରୋଇ ପୁଞ୍ଜି ଜୀବନ ଓ ବଞ୍ଚିବାର ଅଧିକାରକୁ ନିୟନ୍ତ୍ରଣ କରୁଛି । ବିଶ୍ୱ ଅର୍ଥନୈତିକ ଏକଛତ୍ରବାଦୀ ବ୍ୟବସ୍ଥା ମଧରେ ଜଳର ଅଧିକାର ମଧ ଚୁକ୍ତିବନ୍ଧ ହୋଇଛି । ଖୋଲାବଜାର ସଂସ୍କୃତି ପୃଥିବୀରେ ଜଳ ସମାଜ ପାଇଁ ଏକ ଚାଲେଞ୍ଜ୍ ସୃଷ୍ଟି କରିଛି ।

ଜଳର ଘରୋଇକରଣ ରୋକିବା ଏବଂ ସମସ୍ତଙ୍କୁ ଜଳର ସମାନ ଅଧିକାର ଦେବା ପାଇଁ ଏକ ବିଶ୍ୱ ନିୟମାବଳୀର ଏବେ ଜରୁରୀ ହୋଇପଡିଛି । ଆଞ୍ଚଳିକ ସ୍ତରରେ ସର୍ବସାଧାରଣ - ସରକାର ସ୍ତରରେ ଜଳ ପରିଷଦ ଗଠନ, ନଦୀବନ୍ଧ ଯୋଜନା ବନ୍ଦ, ଜଳର ସାର୍ବଜନୀନ ଅଧିକାର ପ୍ରତିଷ୍ଠା ପାଇଁ ଜାତୀୟ ଜଳନୀତି ଘୋଷଣା, ବିଶ୍ୱସ୍ତରରେ ଜଳ ସପକ୍ଷବାଦୀ ଆନ୍ଦୋଳନର ସମନ୍ୱୟ, ଆନ୍ତର୍ଜାତିକ ଜଳ ପୁଞ୍ଜିପତିଙ୍କ ବିରୋଧରେ ଲଢ଼େଇ, ପୁଞ୍ଜିପତି ସପକ୍ଷବାଦୀ ନୀତି ଲାଗୁ କରିବା ପାଇଁ ସରକାରଙ୍କ ପ୍ରଚେଷ୍ଟାକୁ ବିରୋଧ, ଆନ୍ତର୍ଜାତିକ ମୁଦ୍ରାପାଣ୍ଠି ଓ ବିଶ୍ୱବ୍ୟାଙ୍କର ଜନମାରଣ ନୀତିକୁ ବିରୋଧକରି ସଂଗ୍ରାମ, ଜଳର ବ୍ୟବସାୟକୁ ବିରୋଧକରି ଏକ ବଜ୍ର ସଂଗ୍ରାମ ଗଢ଼ି ତୋଳିବାର ଆବଶ୍ୟକତା ଦେଖାଦେଇଛି ।

ତୃତୀୟ ବିଶ୍ୱର ଦେବାଳିଆ ବ୍ୟବସ୍ଥାର ତଥାକଥିତ ସୁଧାର କରିବା ପାଇଁ ଆମେରିକା ଓ ବ୍ରିଟେନ୍ ପରି ରାଷ୍ଟ୍ରମାନେ ପ୍ରଚୁର ଅର୍ଥ ଋଣ ଦେଇଥାନ୍ତି ଏବଂ ପରେ ପର୍ଯ୍ୟାପ୍ତ ହାରରେ ସୁଧ ଓ ମୂଳ ଆଦାୟ କରିଥାନ୍ତି । ଅନେକ ସମସ୍ୟାରେ ଉବୁଟୁବୁ ତୃତୀୟ ବିଶ୍ୱର ରାଷ୍ଟ୍ରଗୁଡିକ ଅନ୍ୟ ଦେଶରୁ ପାଣ୍ଠି ପାଇବା ପାଇଁ ଶେଷ ପର୍ଯ୍ୟାୟରେ ଯେ

କୌଣସି ଚୁକ୍ତିକୁ ମାନିନେଇଥାନ୍ତି । ଏହାର ସୁଯୋଗ ନେଇ ଅନେକ ବହୁରାଷ୍ଟ୍ରୀୟ କମ୍ପାନୀ ସର୍ବନିମ୍ନ ସେବା ଯୋଗାଇ ଦେବା ପାଇଁ ମଧ୍ୟ ସେହି ସବୁ ରାଷ୍ଟ୍ରରେ ପ୍ରବେଶ କରିଥାନ୍ତି । ଏହାର ଫଳ ହୁଏ ତୃତୀୟ ବିଶ୍ୱ ରାଷ୍ଟ୍ର ଅଧିକରୁ ଅଧିକ ସଂକଟରେ ବୁଡିଯିବା । ଏ କ୍ଷେତ୍ରରେ ବହୁରାଷ୍ଟ୍ରୀୟ କମ୍ପାନୀଗୁଡିକୁ ଜାତିସଂଘ, ଆନ୍ତର୍ଜାତିକ ମୁଦ୍ରାପାଣ୍ଠି ଓ ବିଶ୍ୱବ୍ୟାଙ୍କ ସମସ୍ତ ପ୍ରକାର ସହାୟତା ଯୋଗାଇ ଦେଇଥାନ୍ତି ।

ସଂପ୍ରତି ବହୁ ରାଷ୍ଟ୍ରୀୟ ଔଷଧ କମ୍ପାନୀ, କାର ନିର୍ମାଣକାରୀ କମ୍ପାନୀ, କଂପ୍ୟୁଟର/ ଟିଭି ଓ ଇଲୋକଟ୍ରୋନିକ ସାମଗ୍ରୀ ନିର୍ମାଣକାରୀ କମ୍ପାନୀ ଶିଳ୍ପୋନ୍ନତ ରାଷ୍ଟ୍ରରେ କାରଖାନା ପ୍ରତିଷ୍ଠା ନ କରି ତୃତୀୟ ବିଶ୍ୱରେ ନିଜର କାରଖାନା ପ୍ରତିଷ୍ଠା କରିବାକୁ ଆଗ୍ରହୀ ହୋଇଥାନ୍ତି । ଏହାର କାରଣ ହେଲା ପରିବେଶ, ଜଳ, ଚାକିରୀ ସର୍ତ୍ତାବଳୀ, ଶ୍ରମଶକ୍ତି ଇତ୍ୟାଦିର ବ୍ୟାପକ ସଂକଟ ନିଜ ଦେଶରେ ଦେଖାଯିବା । ଶିଳ୍ପୋନ୍ନତ ରାଷ୍ଟ୍ରଗୁଡିକରେ ଯେପରି ପ୍ରଦୂଷଣ ବୃଦ୍ଧି ନ ଘଟିବ ଏବଂ ଜଳ ସଂପଦର କ୍ଷୟ ନଘଟିବ ଏହାକୁ ଆଖି ଆଗରେ ରଖି ଶିଳ୍ପୋନ୍ନତ ରାଷ୍ଟ୍ରଗୁଡିକରେ ବୃହତ୍ କାରଖାନାଗୁଡିକୁ ଅନୁମତି ଦିଆଯାଉ ନଥିବାରୁ ବହୁରାଷ୍ଟ୍ରୀୟ କମ୍ପାନୀମାନେ ଭାରତ ସମେତ ଅନେକ ବିଦେଶୀ ରାଷ୍ଟ୍ରର କମ୍ପାନୀ ପ୍ରତିଷ୍ଠା କରିଥାନ୍ତି । ଏଥିପାଇଁ ହିଁ ବୃହତ୍ତମ ଟିଭି ନିର୍ମାଣକାରୀ ସଂସ୍ଥା ଏଲଜି, ସାମ୍‌ସଂଗ୍, ସାନ୍‌ସୁଇ, ଗାଡି ନିର୍ମାତା ଫୋର୍ଡ୍, ଭୋଲକସ୍ୱାଗନ୍, ହଣ୍ଡା ପ୍ରଭୃତି କମ୍ପାନୀ ଭାରତରେ ପ୍ଲାଣ୍ଟ ପ୍ରତିଷ୍ଠା କରିଛନ୍ତି ।

ବହୁରାଷ୍ଟ୍ରୀୟ କମ୍ପାନୀଗୁଡିକ ଥରେ ଦେଶରେ ପ୍ରବେଶ କଲେ ସେମାନେ ଅନେକ ସରକାରୀ ସୁବିଧା ସହଜରେ ପାଇଥାନ୍ତି । ଉଦାହରଣ ସ୍ୱରୂପ ଟେକ୍‌ସାସ୍‌ର ଅଷ୍ଟିନ୍ ସହରରେ ସାମ୍‌ସଂଗ୍ ଏକ କମ୍ପାନୀ ପ୍ରତିଷ୍ଠା କରିବା ପରେ ଏହି କମ୍ପାନୀକୁ ସରକାର ୧୨୫ ନିୟୁତ ଡ଼ଲାର ଶୁଳ୍କ ଛାଡ଼ କରିଥିବା ବେଳେ ଜଳକର ୩୫ ପ୍ରତିଶତ ଛାଡ କରିଥିଲେ । ଭାରତରେ ମଧ୍ୟ ଏନ୍‌ରନ୍ କମ୍ପାନୀକୁ ମହାରାଷ୍ଟ୍ର ସରକାର ଅନେକ ଜଳକର ରିହାତି ଦେଇଥିଲେ । ଅନେକ କାର ଓ ବାଇକ୍ ନିର୍ମାଣ କମ୍ପାନୀ ୫୦ ପ୍ରତିଶତ କମ୍ ଦରରେ ଜଳ ବ୍ୟବହାର କରିବାର ସୁଯୋଗ ପାଉଛନ୍ତି ।

ପୃଥିବୀରେ ଦିନକୁ ଦିନ ଜଳର ବ୍ୟବହାର ବୃଦ୍ଧି ପାଉଥିବା ବେଳେ ଆନ୍ତର୍ଜାତିକ ସୀମାରେଖା ଅତିକ୍ରମ କରି ଯାଇଥିବା ୨୧୪ଟି ନଦୀର ଜଳକୁ ନେଇ ସଂଘର୍ଷଜନକ ପରିସ୍ଥିତି ସୃଷ୍ଟି ହୋଇଥିବା ବେଳେ ଦେଶ ଦେଶରେ ଜଳର ଘରୋଇକରଣ ପ୍ରକ୍ରିୟା ଯୋଗୁ ବଞ୍ଚିବାର ସଂଘର୍ଷ ମଧ୍ୟ କ୍ରମଶଃ ଭିନ୍ନ ମୋଡ଼ ନେଇଛି । ଏପରି ନୀତି ବିରୋଧରେ ଜାତୀୟ ଓ ଅନ୍ତର୍ଜାତୀୟ ସ୍ତରରେ ସଂଘର୍ଷ ଓ ସଂଗ୍ରାମର ସମୟ ଉପଗତ ହୋଇଛି ।

□□□

# ଜଳର ଅର୍ଥନୀତି

ଅର୍ଥନୀତିର ଉଦାରୀକରଣ ନୀତିପରେ ପୃଥିବୀରେ ମାନବାଧିକାରକୁ ଦୂରେଇ ଦିଆଯାଇଛି । ଅନେକ ଦେଶରେ ମାନବାଧିକାର ଶବ୍ଦକୁ ମଧ୍ୟ ଅଲଗା କରିଦିଆଯାଇଛି । ସାମରିକ ଦେଶଗୁଡିକରେ ବଞ୍ଚିବାର ସ୍ୱାଧୀନତା ଏକ ପ୍ରଶ୍ନ ହୋଇଉଠିଥିବା ବେଳେ ବିଶ୍ୱସ୍ତରରେ ପୁଞ୍ଜିପତି ମିଶ୍ରଣ ଓ ମିଳିତ ବ୍ୟବସାୟ, ଜୀବନର ମାନକୁ ବ୍ୟବସାୟ କ୍ଷେତ୍ରର ପରିସରକୁ ଟାଣି ନେଇଛି । ବଞ୍ଚିବାର ସର୍ବନିମ୍ନ ଆବଶ୍ୟକତାଗୁଡିକୁ ଲାଭଜନକ ପନ୍ଥା ଭାବେ ପରିଣତ କରାଯାଉଛି ଏବଂ ଏଗୁଡିକୁ ପଣ୍ୟର ଦ୍ରବ୍ୟ ଭାବେ ପରିଗଣିତ କରାଯାଉଛି । ସାମାଜିକ, ରାଜନୈତିକ, ଅର୍ଥନୈତିକ, ସାଂସ୍କୃତିକ ଓ ନାଗରିକ ଅଧିକାରଗୁଡିକୁ ମଧ୍ୟ ନଗଣ୍ୟ କରାଯାଇ ବଜାରଭିତ୍ତିକ ବ୍ୟବସ୍ଥାରେ ଏଗୁଡିକର ଭିତ୍ତିଭୂମିକୁ ପୁଞ୍ଜିର ପରିସୀମା ମଧ୍ୟକୁ ଟାଣି ଦିଆଯାଉଛି ।

ପୃଥିବୀରେ ବିକାଶର ଧାରା ଯେତେ ଉନ୍ନତ ଓ ଯେତେ ଗତିଶୀଳ ହେଲେ ମଧ୍ୟ ଏହାର ନିୟନ୍ତ୍ରଣ, ପୁଞ୍ଜି ହାତରେ ରଖିବା ପାଇଁ ବିଶ୍ୱ ଅର୍ଥନୈତିକ ବ୍ୟବସ୍ଥା କ୍ଷେତ୍ର ସୃଷ୍ଟି କରୁଛି ଏବଂ ବିଶ୍ୱ ବଜାର ଅର୍ଥନୀତିର ଶିକ୍ଷା, ସ୍ୱାସ୍ଥ୍ୟ, ସଂସ୍କୃତି ସର୍ବଦା ବନ୍ଦୀ ହେଉଛି ।

ଏସିଆ, ଆଫ୍ରିକା ଓ ଲାଟିନ୍ ଆମେରିକୀୟ ଦେଶଗୁଡିକର ସୁନା, ରୂପା, ହୀରା ଓ ଅନ୍ୟାନ୍ୟ ମୂଲ୍ୟବାନ ଧାତୁର ମାଲିକାନା ପାଇଁ ୟୁରୋପୀୟ ରାଷ୍ଟ୍ରଗୁଡିକର କରାଳ ପ୍ରତିଯୋଗିତା ଏବେ ପୂର୍ଣ୍ଣ ଗଣତାନ୍ତ୍ରିକ ଉପାୟରେ ଏବଂ ନବ୍ୟ ଔପନିବେଶିକ ଧାରାରେ ଚାଲିଛି । ବିଗତ ୩୦୦ ବର୍ଷଠାରୁ ହଡସର୍ନସ୍ ବେ କମ୍ପାନୀ ଓ ଇଷ୍ଟ ଇଣ୍ଡିଆ କମ୍ପାନୀର ଶୋଷଣ ଆରମ୍ଭ ଠାରୁ ଆଜି ଯାଏ ଚାଲି ଆସୁଥିବା ଆନ୍ତର୍ଜାତିକ ବ୍ୟବସାୟର ଧାରା ସହସ୍ରାଧିକ ବହୁରାଷ୍ଟ୍ରୀୟ କମ୍ପାନୀ ପରିସରଭୁକ୍ତ ହେଲାଣି । ବିଦେଶୀ କମ୍ପାନୀଗୁଡିକୁ ସାହାଣ ମେଲା କରିଦିଆଯିବା ଦ୍ୱାରା ଏହି କମ୍ପାନୀଗୁଡିକ ଯେକୌଣସି ରାଷ୍ଟ୍ରର ଆଭ୍ୟନ୍ତରୀଣ ବ୍ୟାପାରରେ ହସ୍ତକ୍ଷେପ କରିବା ସୁନିଶ୍ଚିତ ହୋଇପଡୁଛି । ଏହି ସବୁ ବର୍ଣ୍ଣନା ପରିପ୍ରେକ୍ଷୀରେ ବହୁରାଷ୍ଟ୍ରୀୟ ପୁଞ୍ଜିପତି ବାଣିଜ୍ୟିକ ପରିସର କବଳକୁ ଜଳ ମଧ୍ୟ ଆସୁଛି । କାରଣ ପ୍ରକୃତିର ଏହି ମହାର୍ଘ୍ୟ ଦ୍ରବ୍ୟଟି ଦ୍ୱାରା କୋଟି କୋଟି ଜୀବନକୁ

ନିୟନ୍ତ୍ରଣ କରିବାର ସୁବିଧା ପ୍ରକ୍ରିୟା ବୋଧହୁଏ ଏକମାତ୍ର ବିକଳ୍ପ ବୋଲି ଏକ ଆନ୍ତର୍ଜାତିକ ବିଶ୍ୱାସ ସୃଷ୍ଟି ହୋଇଛି ।

ବର୍ଲିନ ପ୍ରାଚୀରର ପତନ ଓ ଶୀତଳ ଯୁଦ୍ଧର ଅବସାନ ପରେ ବିଶ୍ୱରେ ପୁଞ୍ଜିବାଦର ଦଖଲ ପ୍ରକ୍ରିୟା ଆରମ୍ଭ ହୋଇଥିଲା ଏବଂ ବିଶ୍ୱ ଅର୍ଥନୀତି ପୁଞ୍ଜିପତିଙ୍କ କବଳକୁ ଚାଲି ଯାଇଥିଲା । ବିଶେଷ କରି ସମାଜବାଦର ଭଙ୍ଗା ପରେ ପୁଞ୍ଜିବାଦର ଯେଉଁ ଜୁଆର ଆସିଥିଲା ସେଥିରେ ବହୁରାଷ୍ଟ୍ରୀୟ କମ୍ପାନୀଗୁଡ଼ିକ ସବୁଠାରୁ ଅଧିକ ଫାଇଦା ହାସଲ କରିଥିଲେ । ବ୍ରେଟେନ ଉଡ଼ସ୍ ସମ୍ମିଳନୀ (Bretten Woods Conference -1944) ପରେ ବିଶ୍ୱବ୍ୟାଙ୍କ ପ୍ରତିଷ୍ଠା ଏବଂ ୧୯୪୭ରେ ପ୍ରତିଷ୍ଠିତ ବାଣିଜ୍ୟ ଓ ଶୁଳ୍କ ସଂକ୍ରାନ୍ତ ସାଧାରଣ ରାଜିନାମା (General Agreement on Trariffs and Trade - GATT) ପରେ ଏହାକୁ ପରିବର୍ତ୍ତନ କରି ୧୯୯୫ରେ ଗଠିତ ବିଶ୍ୱ ବାଣିଜ୍ୟ ସମ୍ମିଳନୀ (World Trade Organisation - WTO) ବହୁରାଷ୍ଟ୍ରୀୟ କମ୍ପାନୀଗୁଡ଼ିକର ସ୍ୱାର୍ଥକୁ ରକ୍ଷା କରିବା ପାଇଁ ଆଗେଇ ଆସିବା ଘଟଣା ବିଶ୍ୱ ଅର୍ଥନୀତି ପାଇଁ ଏକ ଅଭିଶପ୍ତ ଘଟଣାବଳୀ ଥିଲା । ବିଭିନ୍ନ ଦେଶ ଓ ବିଶ୍ୱର ସାମଗ୍ରିକ ଅର୍ଥନୀତି ସଜାଡ଼ିବା ଧ୍ୱନି ଦେଇ ବହୁରାଷ୍ଟ୍ରୀୟ କମ୍ପାନୀମାନେ ଯେଉଁ ଉଦ୍ୟମ ଆରମ୍ଭ କରିଥିଲେ ସେ କ୍ଷେତ୍ରରେ ସେମାନଙ୍କୁ ପ୍ରତିରୋଧ କରିବା ପାଇଁ ଜାତୀୟ ବା ଆନ୍ତର୍ଜାତିକ ସ୍ତରରେ କୌଣସି ଉଦ୍ୟମ ମଧ୍ୟ ହୋଇ ନଥିଲା । ଏହି ଦୁର୍ବଳତାର ସୁଯୋଗ ନେଇ ବହୁରାଷ୍ଟ୍ରୀୟ ପୁଞ୍ଜିପତିଗୁଡ଼ିକ ଜୀବନର ପ୍ରତ୍ୟେକ ଅତ୍ୟାବଶ୍ୟକୀୟ ସାମଗ୍ରୀକୁ ନିଜର ମୁନାଫା ଆଦାୟ ପ୍ରକ୍ରିୟାରେ ପରିଣତ କରିଦେଲେ ।

୧୯୯୦ ଦଶକରେ ପୃଥିବୀରେ ପ୍ରାୟ ୭୦୦୦ ବହୁରାଷ୍ଟ୍ରୀୟ ପୁଞ୍ଜିପତି ଥିବାବେଳେ ସେମାନଙ୍କ ସଂଖ୍ୟା ଏବେ ପ୍ରାୟ ୫୦ ହଜାରରେ ପହଞ୍ଚିଛି । ଏଥିରୁ ପ୍ରଥମ ୨୦୦ଟି ସଂସ୍ଥାର ବାର୍ଷିକ ବ୍ୟବସାୟ ପରିମାଣ ପୃଥିବୀର ୧୫୦ରୁ ଅଧିକ ରାଷ୍ଟ୍ରର ଅର୍ଥନୀତି ସହ ସମାନ । ଏଥିରୁ ପ୍ରଥମ ୫୦ଟି କମ୍ପାନୀର ବାର୍ଷିକ ବ୍ୟବସାୟ ପରିମାଣ ଭାରତର ୫ଟି ବାର୍ଷିକ ବଜେଟ ସହ ସମାନ ।

ପୃଥିବୀର ସର୍ବବୃହତ ବହୁରାଷ୍ଟ୍ରୀୟ କମ୍ପାନୀ ଏସକନ ମୋବିଲ ପୃଥିବୀର ତୈଳ ବଜାରକୁ କାବୁ କରି ରଖିଥିବା ବେଳେ ତା' ପଛରେ ଥିବା ୱାଲମାର୍ଟ, ଜେନେରାଲ ମୋଟର୍ସ, ଫୋର୍ଡ୍ ମୋଟର୍ସ, ରୟାଲ ସେଲ, ମିତସୁବିସି, ଟୟୋଟା, ମିଟସୁଇ, ସାମସଂଗ, ମାଇକ୍ରୋସଫ୍ଟ, ଭିଭେଣ୍ଡି ପ୍ରଭୃତି କମ୍ପାନୀ ବିଶ୍ୱର ଅଧିକାଂଶ ଲାଭଜନକ କ୍ଷେତ୍ରରୁ ବାଦ୍ ଯାଇନାହାନ୍ତି । ଏଥିରୁ ଭିଭେଣ୍ଡି କମ୍ପାନୀ ଜଳ ବ୍ୟବସାୟରେ ଲିପ୍ତ ।

ଏହି କମ୍ପାନୀଗୁଡ଼ିକର ଲାଭ ପରିମାଣ ସାଧାରଣତଃ ୧୫୦ ପ୍ରତିଶତରୁ ଅଧିକ ବେଗରେ ବୃଦ୍ଧି ପାଇଥାଏ । ତେଣୁ ଏହି ବୃହତ୍ କମ୍ପାନୀଗୁଡ଼ିକ ଅନେକ ରାଷ୍ଟ୍ରର ରାଜନୀତି ଓ ଅର୍ଥନୀତି ଉପରେ ସିଧାସଳଖ ପ୍ରଭୁତ୍ୱ ବିସ୍ତାର କରିଥାନ୍ତି । ମୋଟର ଗାଡ଼ି ଜଗତରେ ଜେନରାଲ ମୋଟର୍ସ, ଫୋର୍ଡ଼ ମୋଟର କମ୍ପାନୀ, ମିତ୍ସୁବିସି, ହଣ୍ଡା କମ୍ପାନୀ ପରି ଭିଭେଣ୍ଡି ଓ ସୁଏଜ୍ ଜଳ ଜଗତରେ ଏକାଧିପତ୍ୟ ଅଧିକାର ସାବ୍ୟସ୍ତ କରିଛନ୍ତି । ଗତ ୨୦୦୦ରେ ହୋଇଥିବା ଗ୍ଲୋବାଲ ଫର୍ଚ୍ୟୁନ - ୫୦୦ ତାଲିକାରେ ଭିଭେଣ୍ଡିର ସ୍ଥାନ ୯୧ ଥିବା ବେଳେ ସୁଏଜ୍‌ର ସ୍ଥାନ ୧୧୮ ଥିଲା । ଏହି ଦୁଇଟି କମ୍ପାନୀର ବ୍ୟାବସାୟିକ ପରିସର ୧୩୦ଟି ରାଷ୍ଟ୍ରରେ ବ୍ୟାପ୍ତ । ଏହି ସମସ୍ତ କମ୍ପାନୀ ପ୍ରାକୃତିକ ସଂପଦର ୬୫ଭାଗ ହିଁ ନଷ୍ଟ କରିଥାନ୍ତି ଏବଂ ଜଳବାୟୁର ପ୍ରଦୂଷଣ ୭୫ଭାଗ କରିଥାନ୍ତି । ବହୁରାଷ୍ଟ୍ରୀୟ କମ୍ପାନୀଗୁଡ଼ିକର ଜାଲରେ ଅନେକ ସ୍ୱଦେଶୀ ଅର୍ଥନୀତିର ସମାଧି ମଧ୍ୟ ଘଟିଛି ।

ଜଳ ଓ ଜୀବନର ଅଧିକାର ପରସ୍ପରର ପରିପୂରକ ହୋଇଥିଲେ ମଧ୍ୟ ବ୍ୟାବସାୟିକ ତୃଷ୍ଣା ଶେଷରେ କୋଟି କୋଟି ନାଗରିକଙ୍କ ଜୀବନର ଅଧିକାରକୁ ମଧ୍ୟ ଛଡ଼େଇ ନେଇଛି । ବିଶ୍ୱ ପୁଞ୍ଜିବାଦର ପରିସର ମଧ୍ୟରେ ଜଳକୁ ଅଣାଯିବା ପରେ ଜୀବନ - ପୁଞ୍ଜିର ଲୋଲୁପ ଧାରା ଉନ୍ମୋଚିତ ହୋଇଛି ।

ଜଳର ଘରୋଇକରଣ ସାଧାରଣତଃ ତିନିଟି କାରଣକୁ ନେଇ ହୋଇଥାଏ । ପ୍ରଥମ- ଜଳ ଯୋଗାଣ ବ୍ୟବସ୍ଥା ଓ ଭିତ୍ତିଭୂମିକୁ ସରକାର ବହୁରାଷ୍ଟ୍ରୀୟ କମ୍ପାନୀକୁ ବିକିଦେବା, ଦ୍ୱିତୀୟ- ଜଳ ସେବା ପାଇଁ କମ୍ପାନୀଗୁଡ଼ିକୁ ରିହାତି ବା ଲିଜ ଯୋଗାଇଦେବା ଓ ତୃତୀୟ- ଜଳ ବଣ୍ଟନ ଓ ପରିଚାଳନା କମ୍ପାନୀ କରିବା ଏବଂ ରାଜସ୍ୱ ଆଦାୟ ସରକାର କରିବା । ତେବେ ଦ୍ୱିତୀୟ ପ୍ରକାର ଧାରାଟି ବହୁଦେଶରେ ଦେଖା ଦେଇଛି ଏବଂ ସରକାରୀ- ଘରୋଇ ପରିଚାଳନାରେ ଜଳ ବଣ୍ଟନ କରାଯାଉଛି । ଏ କ୍ଷେତ୍ରରେ ଅଧିକାଂଶ ସମୟରେ କମ୍ପାନୀ ଉପରେ ସରକାରଙ୍କ ପ୍ରଭାବ ପ୍ରାୟ ନଥାଏ ଏବଂ ବହୁରାଷ୍ଟ୍ରୀୟ କମ୍ପାନୀଗୁଡ଼ିକ ମନଇଛା ଜଳ ସେବା ଯୋଗାଇଥାନ୍ତି । ଉଦାହରଣ ସ୍ୱରୂପ ବ୍ରିଟେନରେ ୧୯୮୯-୧୯୯୫ ମଧ୍ୟରେ ଜଳର ଘରୋଇକରଣ ଯୋଗୁ ୬୯୨ ପ୍ରତିଶତ ଜଳ ଦର ବୃଦ୍ଧି ପାଇଥିଲା । ୫୦ ପ୍ରତିଶତ ଘରକୁ ଜଳ ଯୋଗାଣ ବନ୍ଦ କରିଦିଆଯାଇଥିଲା ।

ଘରୋଇ ଜଳ କମ୍ପାନୀଗୁଡ଼ିକ ମଧ୍ୟ ସାଧାରଣ ବହୁରାଷ୍ଟ୍ରୀୟ କମ୍ପାନୀଗୁଡ଼ିକ ପରି ବିଭିନ୍ନ ଦେଶରେ ଜଳ ପ୍ରକଳ୍ପ ପ୍ରତିଷ୍ଠା ପାଇଁ ବିପୁଳ ପରିମାଣର ଜମି କ୍ରୟ କରିଥାନ୍ତି ।

ଉଦାହରଣ ସ୍ୱରୂପ ଟେକ୍ସାସ୍‌ରେ ଜଳ ବ୍ୟବସାୟ କରିବା ଲାଗି ବାସ୍ ବ୍ରଦର୍ସ ୪୦ ହଜାର ଏକର ଫାର୍ମ ଜମି କ୍ରୟ କରିଥିଲା । ସେହିପରି ଭିଭେଣ୍ଡି ଓ ସୁଏଜ୍ ମଧ୍ୟ ଅନେକ ଦେଶରେ ଶହ ଶହ ଏକର ଫାର୍ମ ଜମି କ୍ରୟ କରି ଜଳ ବ୍ୟବସାୟ କରିଆସୁଛନ୍ତି ।

ଘରୋଇ ଜଳ କମ୍ପାନୀ ସହ ଅନେକ ସଂସ୍ଥାର ମଧ୍ୟ ଗୋପନ ସଂପର୍କ ଥାଏ । କଂପ୍ୟୁଟର ଉତ୍ପାଦନ କରୁଥିବା, ଇସ୍‌ପାତ ଉତ୍ପାଦନ କରୁଥିବା ଶିଳ୍ପ ସଂସ୍ଥାଗୁଡିକ ଜଳ କମ୍ପାନୀ ସହ ସଂପର୍କ ରଖି ପ୍ରଭୂତ ଜଳ କାରଖାନା ପାଇଁ ନେଇଥାନ୍ତି । ଲସ ଏଞ୍ଜେଲସରେ ଠିକ୍ ଏହି ଧରଣର ଏକ ଘଟଣା ଘଟିଛି । ଇଣ୍ଟେଲ୍ କଂପ୍ୟୁଟର କମ୍ପାନୀ ସ୍ଥାନୀୟ ସହରର ଘରୋଇ ଜଳ ଯୋଗାଣକାରୀ ସଂସ୍ଥା ସହ ହାତ ମିଳାଇ ଥିଲା ଏବଂ ୬୦ ଭାଗ ଜଳ ନିୟମିତ ଅପହରଣ କରୁଥିଲା । ଫଳରେ ସ୍ଥାନୀୟ ବାସିନ୍ଦା ଓ କୃଷକ ଜଳ ପାଇବାରୁ ବଞ୍ଚିତ ହୋଇଥିଲେ ।

ଥରେ ଘରୋଇ କମ୍ପାନୀ ହାତକୁ ଜଳ ବଣ୍ଟନ ଦାୟିତ୍ୱ ଚାଲିଯିବାପରେ ରାଷ୍ଟ୍ରାୟତ୍ତ ଜଳଯୋଗାଣ ଭିତ୍ତିଭୂମି ନଷ୍ଟ ହୋଇ ଯାଇଥାଏ ଏବଂ ମୂଳ କର୍ମଚାରୀ ଛଟେଇ ହୋଇଯାଇଥାନ୍ତି । ଜଳବଣ୍ଟନ ପରି ଏକ ପବିତ୍ର କର୍ତ୍ତବ୍ୟ ସରକାରଙ୍କ ହୋଇଥିଲେ ମଧ୍ୟ ଏବଂ ଯଥେଷ୍ଟ ଭିତ୍ତିଭୂମି ସରକାରଙ୍କ ନିକଟରେ ଥିଲେ ମଧ୍ୟ ସରକାରଙ୍କ ଅମନଯୋଗିତା ଘରୋଇ କମ୍ପାନୀକୁ ପ୍ରୋତ୍ସାହନ ଦେଇଥାଏ । ସମାନ୍ତରାଳ ଅର୍ଥନୀତିରେ ପରିଚାଳିତ ହେଉଥିବା ଘରୋଇ ବହୁରାଷ୍ଟ୍ରୀୟ କମ୍ପାନୀ ସେମାନଙ୍କ ଦେଶରୁ ନୂଆ ଯନ୍ତ୍ରପାତି ଆଣି ବ୍ୟବହାର କରିଥାନ୍ତି ଯାହା ବ୍ୟୟ ବହୁଳ ହୋଇଥାଏ ଏବଂ ଏହି ଖର୍ଚ୍ଚ ଲାଘବ କରିବା ପାଇଁ ସେମାନେ ଜଳଦର ବୃଦ୍ଧି କରିବାକୁ ବାଧ୍ୟ ହୋଇଥାନ୍ତି ।



# ଜଳସଂପଦ ଓ ଜଗତୀକରଣ

ଅର୍ଥନୈତିକ ଜଗତୀକରଣ ପରେ ଦେଶ ଦେଶ ମଧ୍ୟରେ ରହିଥିବା ଆର୍ଥିକ ସୀମାର ବିଲୋପ ଘଟିଛି ଏବଂ ବହୁରାଷ୍ଟ୍ରୀୟ ପୁଞ୍ଜିପତିମାନଙ୍କ ଉପରେ ଥିବା କଟକଣା ମଧ୍ୟ ଉଠାଇ ଦିଆଯାଇଛି । ନବ୍ୟ-ଉଦାରୀକରଣ ଅର୍ଥନୀତି ଆଳରେ ବିଶ୍ୱ ଅର୍ଥନୀତି ସ୍ରୋତରେ ଜାତୀୟ ଅର୍ଥନୀତିଗୁଡିକ ବିଲୋପ ହୋଇଯାଇଛନ୍ତି । ଏହାରି ପ୍ରଭାବରୁ ଜଳ ସଂପଦ ମଧ୍ୟ ବାଦ୍ ପଡିନାହିଁ । ଜଳ ସଂପଦ ଉପରେ ଆର୍ଥିକ ଜଗତୀକରଣର ପ୍ରଭାବ ପରୋକ୍ଷ ଓ ପ୍ରତ୍ୟକ୍ଷ ଭାବେ ପଡିଛି । ପରିବେଶ, ଜଙ୍ଗଲ, ଭିତିଭୂମି, ଯୋଗାଯୋଗ ଆଦି ସମସ୍ତ କ୍ଷେତ୍ରରେ ଜଗତୀକରଣର ପ୍ରଭାବ ପଡିଥିବା ବେଳେ ଜଳ ମଧ୍ୟ ଏଥିରୁ ବାଦ ପଡିନାହିଁ । ଗତ ଦଶନ୍ଧି ମଧ୍ୟରେ ରାଜନୈତିକ ଓ ଅର୍ଥନୈତିକ ଦୃଷ୍ଟିରୁ ଜଳର ଜଗତୀକରଣର ପ୍ରଭାବ ପରିଲକ୍ଷିତ ହୋଇଛି ।

ନବ୍ୟ-ଉଦାରୀକରଣ ଅର୍ଥନୈତିକ ତତ୍ତ୍ୱ ଅନୁସାରେ ଆନ୍ତର୍ଜାତିକ ବାଣିଜ୍ୟ ଓ ବିନିଯୋଗ କ୍ଷେତ୍ରରେ ଏକ ବଜାର ପରିଚାଳିତ ଅର୍ଥନୀତି ତିଆରି ପାଇଁ ଘରୋଇକରଣ ଏକ ମୌଳିକ ପଦକ୍ଷେପ ହୋଇଥାଏ । ସେଥିପାଇଁ ଅନେକ ରାଷ୍ଟ୍ରାୟତ୍ତ ନୀତିନିୟମକୁ ଘରୋଇକରଣ କରିବା ସପକ୍ଷରେ ମତ ଦିଆଯାଇଥାଏ । ରାଷ୍ଟ୍ରାୟତ୍ତ ସମସ୍ତ ସୁବିଧାକୁ ଦୂରେଇ ଦିଆଯାଇ ସରକାର ସିଧାସଳଖ ଘରୋଇ କମ୍ପାନୀ ସହ ଆଲୋଚନା କରିଥାନ୍ତି । କ୍ରମାଗତ ଆର୍ଥିକ ପରିଚାଳନାଗତ ତ୍ରୁଟି ଏବଂ ରାଷ୍ଟ୍ରର ଆବଶ୍ୟକତା ଦର୍ଶାଇ ବିପୁଳ ଋଣ ଇତ୍ୟାଦି ପ୍ରକ୍ରିୟା ପରବର୍ତ୍ତୀ ପର୍ଯ୍ୟାୟରେ ଘରୋଇକରଣର ପଥକୁ ଉନ୍ମୁକ୍ତ କରିଥାଏ । ୧୯୯୬ରେ ପ୍ରଥମେ ବିଶ୍ୱବ୍ୟାଙ୍କ ୧୮ଟି ଦେଶର ୬୧ଟି ରାଷ୍ଟ୍ରାୟତ୍ତ ଉଦ୍ୟୋଗ / ଫାର୍ମର ଘରୋଇକରଣ ନିମନ୍ତେ ଏକ ତାଲିକା ଜାରି କରିଥିଲା । ବିଶ୍ୱବ୍ୟାଙ୍କର ଏହି ନିର୍ଦ୍ଦେଶ ମଧ୍ୟ କାର୍ଯ୍ୟକାରୀ ହୋଇଥିଲା ।

୧୯୯୭ ଯାଏ ଜଳ ଶିଳ୍ପର ଘରୋଇକରଣ କରାଯାଇନଥିଲା । ଯେଉଁଠି କେତେକ ସ୍ଥଳରେ ଘରୋଇକରଣ କରାଯାଇଥିଲା ସେଠାରେ କେତେକ କ୍ଷୁଦ୍ର କମ୍ପାନୀଙ୍କୁ ହିଁ ଅନୁମତି ମିଳିଥିଲା । ୧୯୯୭ ବେଳକୁ ଶକ୍ତି, ଟେଲି ଯୋଗାଯୋଗ ଓ ଫାର୍ମାସ୍ୟୁଟିକାଲ

ପରି ବୃହତ୍ କ୍ଷେତ୍ରର ଘରୋଇକରଣ ପ୍ରକ୍ରିୟା ଆରମ୍ଭ ହେବା ବେଳକୁ ଜଳର ଘରୋଇକରଣ ପ୍ରକ୍ରିୟା ମଧ୍ୟ ଆରମ୍ଭ ହୋଇଥିଲା । ପରେ ପ୍ରଥମେ ଦେଶବ୍ୟାପୀ ଜଳର ଘରୋଇକରଣ କାର୍ଯ୍ୟ ଆରମ୍ଭ ହୋଇଥିଲା ସ୍ପେନ୍‌ରୁ । ସେଠାରେ ଏକ ତୃତୀୟାଂଶ ସ୍ଥାନରେ ଜଳରେ ଘରୋଇକରଣ କରାଯାଇଥିଲା । ସ୍ପେନ୍‌ରେ ହୋଇଥିବା ଜଳର ଘରୋଇକରଣ ପ୍ରକ୍ରିୟାରେ ପ୍ରମୁଖ ସ୍ଥାନ ଗ୍ରହଣ କରିଥିଲେ ଫ୍ରେଞ୍ଚ କମ୍ପାନୀ ଭିଭେଣ୍ଡି ଓ ସୁଏଜ । ସେହିପରି ଚେକ୍‌ରେ ଲିନୋସ ଡ୍ରେସ ଏକ୍ସ, ହଂଗେରୀରେ ଲିନୋସ ଡ୍ରେସ ଏକ୍ସ, ପୋଲାଣ୍ଡରେ ସଭର ଓ ଲିନୋସ ଡ୍ରେସ ଏକସ କମ୍ପାନୀ ଜଳର ଘରୋଇକରଣ ଦାୟିତ୍ୱ ନେଲେ । ପରେ ପରେ ଏହି ପ୍ରକ୍ରିୟା ଏସିଆ ଓ ଲାଟିନ୍ ଆମେରିକାରେ ମଧ୍ୟ ଦେଖାଯାଇଥିଲା । କାନାଡ଼ାରେ ଜଳର ଘରୋଇକରଣ ନ କରିବା ପାଇଁ ବ୍ୟାପକ ଜନମତ ପ୍ରକାଶ ପାଇଥିବା ସତ୍ତ୍ୱେ ସେଠାରେ ମଧ୍ୟ ଜଳର ଘରୋଇକରଣ କରାଯାଇଥିଲା ।

ଆର୍ଜେଣ୍ଟିନାର ଟୁବୁମାନ୍‌ରେ ମଧ୍ୟ ଫ୍ରେଞ୍ଚ୍ ଭିଭେଣ୍ଡି କମ୍ପାନୀ ଜଳ ବିତରଣ ଦାୟିତ୍ୱ ନେଇଥିଲା । ମାତ୍ର ଜଳର ମାନ ହ୍ରାସ, ଦୁର୍ନୀତି ଇତ୍ୟାଦି କାରଣ ଯୋଗୁ ସେଠାରୁ ଫ୍ରେଞ୍ଚ କମ୍ପାନୀ ତ୍ୟାଗ କରିଥିଲା । ବାଣିଜ୍ୟ ଓ ବିକାଶ ସଂକ୍ରାନ୍ତ ଜାତିସଂଘ ସମ୍ମିଳନୀ (United Nations Conference on Trade and Development - UNCTAD) ଜରିଆରେ ଦକ୍ଷିଣ ଆଫ୍ରିକାର ମିଡ୍ରାଣ୍ଡଠାରେ ଆୟୋଜିତ ସମ୍ମିଳନୀରେ ଜଳ ସମେତ ଅନ୍ୟାନ୍ୟ ଦ୍ରବ୍ୟର ମୁକ୍ତବଜାରୀକରଣ ନିମନ୍ତେ ଏକ ପ୍ରସ୍ତାବ ବିଶ୍ୱବ୍ୟାଙ୍କ ଓ ବିଶ୍ୱ ବାଣିଜ୍ୟ ସଂଗଠନ ଜରିଆରେ ଗୃହୀତ ହୋଇଥିଲା ଯାହାକୁ ଅନେକ ରାଷ୍ଟ୍ର ବିରୋଧ କରିଥିଲେ । ସଂପ୍ରତି ୭୦ରୁ ଅଧିକ ବିକାଶଶୀଳ ରାଷ୍ଟ୍ରରେ ମାନବ ବିକାଶ ରିପୋର୍ଟର ସ୍ଥିତି ଅତି ନୈରାଶ୍ୟଜନକ ହୋଇଛି । ଶତାଧିକ ରାଷ୍ଟ୍ରରେ ଜଳର ଘରୋଇକରଣ ହୋଇଛି । ଅନେକ ରାଷ୍ଟ୍ରରେ ମାନବାଧିକାରର ବ୍ୟାପକ ଉଲ୍ଲଂଘନ ହେଉଛି ।

ବିଭିନ୍ନ ବିକାଶଶୀଳ ଓ ଅନୁନ୍ନତ ରାଷ୍ଟ୍ରଗୁଡିକ ସହ ବାଣିଜ୍ୟ ସଂକ୍ରାନ୍ତ ବହୁମୁଖୀ ରାଜିନାମା (Multilateral Agreement on Investments- MAI) ଜରିଆରେ ମୁକ୍ତ ବାଣିଜ୍ୟକୁ ଅଗ୍ରାଧିକାର ଦିଆଯାଉଛି । ବହୁରାଷ୍ଟ୍ରୀୟ କମ୍ପାନୀଗୁଡିକୁ ଏହା ଜରିଆରେ ଅଗାଧ କ୍ଷମତା ମିଳୁଛି ଏବଂ ସେମାନଙ୍କ ଇଛା ଅନୁସାରେ ଯେ କୌଣସି ଦେଶର ଯେକୌଣସି କ୍ଷେତ୍ରରେ ପୁଞ୍ଜି ବିନିଯୋଗ ପାଇଁ ଅଧିକାର ପ୍ରଦାନ କରାଯାଇଛି । ବହୁରାଷ୍ଟ୍ରୀୟ କମ୍ପାନୀଗୁଡିକ ବିଭିନ୍ନ କ୍ଷେତ୍ରରେ ବିଶାଳ ପ୍ରକଳ୍ପ ପ୍ରତିଷ୍ଠା କରିବା ଦ୍ୱାରା ଏହି ପ୍ରକଳ୍ପଗୁଡିକ ପାଇଁ ପ୍ରଚୁର ଜଳ ଆବଶ୍ୟକ ହୋଇଥାଏ ଏବଂ ବିଷାକ୍ତ ଜଳ ମଧ୍ୟ ବାହାରି ଥାଏ ।

ଜଗତୀକରଣ ଅର୍ଥନୀତିର ଧାରା ବିଶ୍ୱରେ ଦେଖାଦେବା ପରେ ଦେଶ ଦେଶ ମଧ୍ୟରେ ରହିଥିବା ଅର୍ଥନୈତିକ ସୀମା ଉଭେଇ ଯାଉଛି ଏବଂ ବହୁରାଷ୍ଟ୍ରୀୟ କମ୍ପାନୀମାନେ

ଏହାର ଅଧିକ ଫାଇଦା ନେଉଛନ୍ତି । କୌଣସି ଏକ ଦେଶର କେତେକ ନିର୍ଦ୍ଦିଷ୍ଟ କ୍ଷେତ୍ରରେ ସେବା ସୁଯୋଗ ଥାଇ ପାରେ ଏହାକୁ ଅନ୍ୟ କ୍ଷେତ୍ରକୁ ବିସ୍ତାରିତ କରିବା ହେଉଛି ବହୁରାଷ୍ଟ୍ରୀୟ କମ୍ପାନୀଗୁଡ଼ିକର କାର୍ଯ୍ୟ । ଏଥିପାଇଁ ଅନେକ ରାଷ୍ଟ୍ରରେ ଗୋଟିଏ କମ୍ପାନୀ ବିଭିନ୍ନ କ୍ଷେତ୍ରରେ ପୁଞ୍ଜି ବିନିଯୋଗ କରିବାର ସୁଯୋଗ ପାଇଥାଏ ।

ଜଗତୀକରଣ ଅର୍ଥନୀତି ଯେ ଦିନେ ଜଳ କ୍ଷେତ୍ରକୁ ମଧ୍ୟ କବଳିତ କରିବ - ଏହା କାହାରି ବିଶ୍ୱାସରେ ନଥିଲା । ମାତ୍ର ପ୍ରକୃତିର ଏହି ମହାର୍ଘ ସଂପଦ ଜରିଆରେ ଯେ ଅଗାଧ ପୁଞ୍ଜି ହାସଲ କରାଯାଇପାରିବ ଏହା ବହୁରାଷ୍ଟ୍ରୀୟ କମ୍ପାନୀ ହୃଦବୋଧ କରିବା ପରେ ଜଳ ଶେଷରେ ପୁଞ୍ଜି ଆଦାୟର ପରିସରଭୁକ୍ତ ହେଲା ।

ଜଳ ସଂପଦକୁ ବ୍ୟବସାୟ କରିବା ପାଇଁ ବହୁରାଷ୍ଟ୍ରୀୟ କମ୍ପାନୀଗୁଡ଼ିକ ମଧ୍ୟରେ ପ୍ରବଳ ପ୍ରତିଯୋଗିତା ଦେଖାଗଲାଣି । ଜଳସ୍ତର ହ୍ରାସ, କମ୍ପାନୀ ସଂଖ୍ୟା ଓ ଜନସଂଖ୍ୟା ବୃଦ୍ଧି ଇତ୍ୟାଦି କରଣ ଯୋଗୁ ବହୁରାଷ୍ଟ୍ରୀୟ ଜଳ କମ୍ପାନୀଗୁଡ଼ିକ ବିଶ୍ୱରେ ଧନୀତାଲିକାର ପ୍ରଥମ ପର୍ଯ୍ୟାୟକୁ ଯେ ଆସିବେ ତାହା ହୃଦ୍‌ବୋଧ ହେଉଛି ।

ଜଳର ଅର୍ଥନୀତି କ୍ରମଶଃ ବିଶ୍ୱରେ ଗମ୍ଭୀର ହେବାକୁ ଯାଉଥିବା ହେତୁ ତୈଳ ଉତ୍ପାଦନକାରୀ ରାଷ୍ଟ୍ର ସମୂହ ଓପେକ (OPEC) ଗଠନ କରିବା ପରି ଜଳବହୁଳ ରାଷ୍ଟ୍ରଗୁଡ଼ିକ ମଧ୍ୟ ସମଧରଣର ମେଣ୍ଟ ଗଠନ କରିବାକୁ ଆଗ୍ରହ ପ୍ରକାଶ କଲେଣି । ପୃଥିବୀର ସର୍ବବୃହତ୍ ୨୮ଟି ମଧୁର ଜଳ ହ୍ରଦ ମଧ୍ୟରୁ ଋଷିଆର ବୈକାଲ ହ୍ରଦ, ଆଫ୍ରିକାର ଟାଙ୍ଗାନିକ୍ୟା, ଆମେରିକା- କାନଡ଼ା ସୀମାନ୍ତ ଅନ୍ତର୍ଗତ ସୁପିରିଅର ହ୍ରଦ ଅନ୍ୟତମ । ବିଶ୍ୱର ସର୍ବବୃହତ୍ ନଦୀ ମଧ୍ୟରୁ ୨୫ଟି ନଦୀ ମଧ୍ୟରେ ଏସିଆର ୧୧ଟି (ଗଂଗା, ୟାଂଗଟେ, ୟେନିସି, ଲେନା, ମେକଙ୍ଗ, ସିନ୍ଧୁ, ସାଲୱିନ, ଇରାୱାଡ଼ି, ଓବ୍, ଚୁସ୍ତ୍ୟାନ, ଅମୁର), ଉତ୍ତର ଆମେରିକାର ୫ଟି (ମିସିସିପ, ସେଣ୍ଟ ଲରେନସ, ମାକାଟି, କଲମ୍ବିଆ, ୟୁକୁନ), ଲାଟିନ ଆମେରିକାର ୪ଟି (ଆମାଜାନ, ପରଣା, ଓରିନୋକୋ, ମାଗଡ଼ାଲେନା), ଆଫ୍ରିକାର ୩ଟି (କଂଗୋ, ନାଇଜର, ନୀଳ) ଓ ୟୁରୋପର ୨ଟି (ଡ଼ାନୁବେ ଓ ଭଲଗା) ଅନ୍ୟତମ । ଉପରୋକ୍ତ ହ୍ରଦ ଓ ନଦୀଗୁଡ଼ିକର ଜଳର ଗୁରୁତ୍ୱ ଏବେ ଯଥେଷ୍ଟ ବୃଦ୍ଧି ପାଇଛି ଏବଂ ଏହି ନଦୀଗୁଡ଼ିକର ଜଳ ଉପରେ ଏକାଧିକ ରାଷ୍ଟ୍ର ନିର୍ଭର କରୁଥିବାରୁ ଜଳ ବହୁଳ ରାଷ୍ଟ୍ରଗୁଡ଼ିକ ପକ୍ଷରୁ ମେଣ୍ଟ ଗଠନ କରାଯିବା ସ୍ୱାଭାବିକ ।

□□□

# ବିଷାକ୍ତ ଜଳର ଧାରା

ବହୁରାଷ୍ଟ୍ରୀୟ କମ୍ପାନୀଗୁଡିକ ବିଭିନ୍ନ ହ୍ରଦର ମାଲିକାନା ନିଜ ହାତକୁ ନେଇଥିବା ବେଳେ ସାର ଉଦ୍ୟୋଗରେ ମଧ୍ୟ ସେମାନଙ୍କର ପ୍ରଭାବ କମ୍ ନାହିଁ । ଅନେକ ବହୁରାଷ୍ଟ୍ରୀୟ କମ୍ପାନୀ ପ୍ରଚୁର ପରିମାଣର ସାର ଉତ୍ପାଦନ କରି ବିକ୍ରୟ କରିବା ହେତୁ ଏହାର ପ୍ରଭାବ ଜଳ, ଜମି ଓ ଫସଲ ଉପରେ ପଡୁଛି । କୃଷିର ବିକାଶ ନାମରେ ସାରର ମାତ୍ରାଧିକ ପ୍ରୟୋଗ ମହାର୍ଘ ଜଳସଂପଦ ପାଇଁ ବିପଦର କାରଣ ହୋଇଛି । ଭାରତରେ ସଂପ୍ରତି ୧୪୦ ପ୍ରକାର ସାର ତିଆରି ହେଉଥିବା ବେଳେ ବାର୍ଷିକ ୧ଲକ୍ଷ ଟନ ସାର ଜାତୀୟ ପଦାର୍ଥ ଜମିରେ ପ୍ରୟୋଗ ହେଉଛି । ଏହାର ଫଳସ୍ୱରୂପ ପ୍ରତିବର୍ଷ ଏକ ଲକ୍ଷ ହେକ୍ଟର ଜମି ସଂପୂର୍ଣ୍ଣ ବିଷାକ୍ତ ହୋଇଯାଉଛି । ଦିଲ୍ଲୀ, ଉତ୍ତରପ୍ରଦେଶ, ବିହାର, ମଧ୍ୟପ୍ରଦେଶ, ଆନ୍ଧ୍ରପ୍ରଦେଶ ଓ ଓଡ଼ିଶାରେ ଜମିରେ ପ୍ରୟୋଗ କରାଯାଉଥିବା ସାରର ପରିମାଣ ଯଥେଷ୍ଟ ଅଧିକ ହେଉଛି । ଫଳରେ ଭୂଗର୍ଭସ୍ଥ ଜଳ ବିଷାକ୍ତ ହୋଇପଡିଛି । ବିଏଚସି(ସାର), ଡ଼ିଡ଼ିଟି, ଆଦି ଫସଲରେ ପ୍ରୟୋଗ ହେବା ଯୋଗୁ ଉଭୟ ଭୂଜଳ ଓ ନଦୀଗର୍ଭସ୍ଥ ଜଳ ମଧ୍ୟ ବିଷାକ୍ତ ହେଉଛି ।

କର୍ଣ୍ଣାଟକର ବିଭିନ୍ନ ଅଞ୍ଚଳରୁ ଜଳ ନେଇ କରାଯାଇଥିବା ସର୍ଭେରୁ ଜଣାଯାଇଛି ଯେ ଜଳରେ ୦.୨ ପିପିଏମ (Parts per billion) କୀଟନାଶକ ଔଷଧ ରହିଛି । କାବେରୀ ନଦୀବନ୍ଧ ବିଏଚସି ପରିମାଣ ୧୦୦୦ ପିପିବି (Parts per million) ଥିବା ବେଳେ ମିଥାବାଲ ପରାଥିଅନ ପରିମାଣ ୧୩୦୦ ପିପିବି ଥିବା ଜଣାଯାଇଛି ।

ଯମୁନା ନଦୀରେ ମିଶିଥିବା ଡ଼ିଡ଼ିଟି ପରିମାଣ ୨୧.୮ ପିପିଏମ ବୋଲି ଜଣାଯାଇଛି । ଭାରତରେ ଫସଲ ଓ ବିହନରେ ଏତେ ପରିମାଣର ସାର ମିଶା ଯାଉଛି ଏହାର ହାର ବିଶ୍ୱରେ ପ୍ରଥମ ଏବଂ ଜଳରେ ବାହାରୁଥିବା ବିଷାକ୍ତ କୀଟନାଶକ ଔଷଧର ପରିମାଣ ମଧ୍ୟ ବିଶ୍ୱରେ ପ୍ରଥମ । ପ୍ରତ୍ୟେକ ଭାରତୀୟଙ୍କ ଶରୀରରେ ଥିବା କୀଟନାଶକ ଔଷଧର ପରିମାଣ ୩୧ ପିପିଏମ୍ । ଅଷ୍ଟ୍ରେଲିଆରେ ଏହି ହାର ୨୦ଥିବା ବେଳେ କାନଡ଼ାରେ ଏହା ୧୦.୮ ଓ ବ୍ରିଟେନରେ ୧୨.୦ । କୋଲକାତାର ଖାଦ୍ୟ ବଜାରରେ ବିଭିନ୍ନ ପନିପରିବାରେ ରହିଥିବା ମାଲାଥିଅନ ଓ ଲିଣ୍ଡେନ ପରିମାଣ ୩୨ ପିପିଏମ ବୋଲି ଜଣାଯାଇଛି ।

ଜଳରେ ବିଷାକ୍ତ କୀଟନାଶକ ଔଷଧ ମିଶୁଥିବା ଘଟଣାରେ ପ୍ରତିବର୍ଷ ପୃଥିବୀରେ ୧୨,୦୦୦ ଲୋକ ପ୍ରାଣ ହରାଉଛନ୍ତି ଏବଂ ୫ଲକ୍ଷରୁ ଅଧିକ ଲୋକ ଦୂରାରୋଗରେ ପୀଡିତ ହେଉଛନ୍ତି । ଏହା ବ୍ୟତୀତ ଜଳରେ ମିଶୁଥିବା ସେଲଫୋସ, ଆଲୁମିନିୟମ ଫସପାଇଡ୍, ଏଣ୍ଡେରିନ ଇତ୍ୟାଦି ଯୋଗୁ ଜୀବଜଗତ ଉପରେ ଏହାର ମାତ୍ରାଧିକ କୁପ୍ରଭାବ ପଡୁଛି ।

ଏଣ୍ଡୋସଲଫାନ ନାମକ ଏକ କୀଟନାଶକ ଔଷଧ ଆମେରିକା ପରି ଶିଳ୍ପୋନ୍ନତ ରାଷ୍ଟ୍ରଗୁଡିକରେ ନିଷିଦ୍ଧ ହୋଇଥିବା ବେଳେ ଅନେକ ବହୁରାଷ୍ଟ୍ରୀୟ କମ୍ପାନୀ ଭାରତରେ ତାହାର ଉତ୍ପାଦନ କରୁଛନ୍ତି । ଭୂଗର୍ଭସ୍ଥ ଜଳରେ ଏଣ୍ଡୋସଲଫାନ ମିଶିବାଦ୍ୱାରା ହୃଦୟ, ଯକୃତ୍, ଫୁସ୍‌ଫୁସ୍ ଉପରେ କୁପ୍ରଭାବ ପକାଇଥାଏ ।

ଫସଲରେ ବ୍ୟବହାର କରାଯାଉଥିବା ବିଷାକ୍ତ କୀଟନାଶକ ଔଷଧ ନଦୀଜଳରେ ଯାଇ ସମୁଦ୍ରରେ ମିଶୁଥିବା ହେତୁ ସମୁଦ୍ର ଜଳ ମଧ୍ୟ ବିଷାକ୍ତ ହୋଇଯାଏ ଏବଂ ପ୍ରତିବର୍ଷ ୧୦୦୦ ପ୍ରକାର ସାମୁଦ୍ରିକ ଜୀବ ଧ୍ୱଂସ ହୋଇଯାଇଥାନ୍ତି ।

ବାୟୁମଣ୍ଡଳରେ ମିଶୁଥିବା ବିଷାକ୍ତ ଦ୍ରବ୍ୟ କ୍ରମଶଃ ଏସିଡ୍‌ବର୍ଷା ଆକାରରେ ବର୍ଷା ହେଉଥିବାରୁ ଏହି ବର୍ଷାର ପ୍ରଭାବରେ ଜଙ୍ଗଲ ଓ ଫସଲର ବ୍ୟାପକ କ୍ଷୟ ଘଟୁଛି । ସେହିପରି ମଣିଷ ବ୍ୟବହାର କରୁଥିବା ଅନେକ ବସ୍ତୁକୁ ସିଧାସଳଖ ଜଳର ଧାରାରେ ମିଶାଇ ଦିଆଯାଉଥିବାରୁ ଭୂଗର୍ଭସ୍ଥ ଜଳ ସଂପୂର୍ଣ୍ଣ ବିଷାକ୍ତ ହୋଇଯାଉଛି ।

ପୃଥିବୀର ଇତିହାସକୁ ଅନୁସଂଧାନ କଲେ ଜଣାଯାଏ ଯେ ଆଜିକୁ ୪୪କୋଟି ବର୍ଷ ପୂର୍ବେ ପୃଥିବୀରେ ଏକ ଗଣବିଧ୍ୱଂସୀ (Mass Extinction) ପ୍ରକ୍ରିୟା ଦେଖାଦେଇଥିଲା ଯାହା ଫଳରେ ୮୫ ପ୍ରତିଶତ ଜୀବଜନ୍ତୁ ଧ୍ୱଂସ ପାଇଯାଇଥିଲେ । ପରେ ୩୬.୫ କୋଟି ବର୍ଷ ୨୫.୧ କୋଟି ବର୍ଷ ଓ ୨୦.୫ କୋଟି ବର୍ଷ ପୂର୍ବେ ମଧ୍ୟ ତିନୋଟି ଗଣବିଧ୍ୱଂସୀ ପ୍ରକ୍ରିୟା ଦେଖା ଦେଇଥିଲା । ପୃଥିବୀର ତାପମାତ୍ରା ହଠାତ୍ ବଢିଯିବାରୁ ଦୀର୍ଘ ୧୪କୋଟି ବର୍ଷ ରାଜତ୍ୱ କରିଥିବା ବିଶାଳକାୟ ଡ଼ାଏନୋସାର ସଂପ୍ରଦାୟ ୬କୋଟି ବର୍ଷ ପୂର୍ବେ ବିଲୋପ ହୋଇଯାଇଥିଲେ । ସେହିପରି ବର୍ତ୍ତମାନ ମଧ୍ୟ ଜଳର ବିଷ ପ୍ରକ୍ରିୟା, ବିଷାକ୍ତ ପରିବେଶ ଇତ୍ୟାଦି କାରଣ ଯୋଗୁ ୧୦ ଭାଗ ଜୀବଜନ୍ତୁ ବିଲୋପ ହୋଇଯାଇଥିବା ବେଳେ ଆଗାମୀ ୨୦୫୦ ବେଳକୁ ୪୦ପ୍ରତିଶତ ପ୍ରକାର ଜୀବଜନ୍ତୁ ବିଲୋପ ହେବାର ଆଶଙ୍କା ଦେଖାଦେଇଛି ।

ପବିତ୍ର ଜଳକୁ ବିଷାକ୍ତ ଓ ଜୀବାଣୁଯୁକ୍ତ କରିବା କ୍ଷେତ୍ରରେ ସାଧାରଣ ମଣିଷର ଭୂମିକା ମଧ୍ୟ ଯଥେଷ୍ଟ ଥାଏ । ସାଧାରଣ ଶିକ୍ଷାର ଅଭାବ, ବୈଜ୍ଞାନିକ ଚେତନାର ଅଭାବ ଯୋଗୁ ପ୍ରତିଦିନ ଲକ୍ଷ ଲକ୍ଷ ଲିଟର ଜଳ ବିଷାକ୍ତ ଓ ରୋଗଯୁକ୍ତ ହେଉଛି ।

ସାଧାରଣତଃ ଗ୍ରାମାଞ୍ଚଳରେ ପାଇଖାନା ନଥାଏ । ଗ୍ରାମାଞ୍ଚଳର ୮୫ଭାଗ ଲୋକ

ସର୍ବସାଧାରଣରେ ଝାଡ଼ା ଯାଇଥାନ୍ତି । ଯଦିଓ ଅର୍ଥନୀତି ପ୍ରାଥମିକ କାରଣ ତଥାପି ଅନେକ ସମ୍ବଳ ସଂପନ୍ନ ପରିବାର ମଧ୍ୟ ପାଇଖାନା ନିର୍ମାଣ କରିବାର ଆଗ୍ରହ ପୋଷଣ କରିନଥାନ୍ତି । ଫଳରେ ମୁକ୍ତ ପରିବେଶକୁ ଦୂଷିତ କରିବାରେ ସେମାନଙ୍କ ଭୂମିକା ଯଥେଷ୍ଟ ଥାଏ । ଗ୍ରାମାଞ୍ଚଳରେ ଜଳର ଭୂମିକା ସର୍ବାପେକ୍ଷା ଗୁରୁତ୍ୱ ଥିବା ସହ ଜଳର ଗୁଣଗତ ପ୍ରଭାବ ୮୦ ଭାଗ ଲୋକଙ୍କ ସ୍ୱାସ୍ଥ୍ୟାବସ୍ଥା ନିର୍ଣ୍ଣୟ କରୁଥିବା ସତ୍ତ୍ୱେ ଏ କ୍ଷେତ୍ରରେ ସଚେତନତା ପରିଲକ୍ଷିତ ହୋଇନାହିଁ ।

ସର୍ଭେରୁ ଜଣାଯାଇଛି ଯେ ଏକ ଗ୍ରାମ୍ ଓଜନର ମଳରେ ୧୦ଲକ୍ଷ ଭୂତାଣୁ ଥିବା ବେଳେ ଏକ ଲକ୍ଷ ମାରାତ୍ମକ ବ୍ୟାକ୍ଟେରିଆ ଥାନ୍ତି । ୧୦୦୦ ପରଜୀବୀ କୋଷ ଥିବାବେଳେ ୧୦୦ଟି ପରଜୀବୀ ଡ଼ିମ୍ୱ ଥାଏ । ମାତ୍ର ଏକ ଗ୍ରାମ ମଳରେ ଥିବା ଏହି ବିଷାକ୍ତ ଭୂତାଣୁ, ଜୀବାଣୁ ଏକଶହ ଲୋକଙ୍କ ବିପଦର କାରଣ ହୋଇଥାଏ । ପ୍ରତିଦିନ ଭାରତରେ ଯେଉଁ ସଂଖ୍ୟକ ଲୋକ ଖୋଲା ଅଞ୍ଚଳରେ ଝାଡ଼ା ଯାଇଥାନ୍ତି ସେହି ଝାଡ଼ାର ପରିମାଣ ୨ଲକ୍ଷ ମେଟ୍ରିକ ଟନ ହେବ । ଏଥିରୁ ବାହାରୁଥିବା ଭୂତାଣୁ, ଜୀବାଣୁ, ଡ଼ିମ୍ୱ ଓ କୋଷ କୋଟି କୋଟି ଲୋକଙ୍କ ସ୍ୱାସ୍ଥ୍ୟଗତ ବିପଦର କାରଣ ହୋଇଥାନ୍ତି । ଏହା ସହ ଏହି ଝାଡ଼ା ଜଳରେ ମିଶୁଥିବାରୁ ସାତ କୋଟି ଘନମିଟର ଜଳ ପିଇବା ଯୋଗ୍ୟ ହୋଇପାରିନଥାଏ ବା ବିଷାକ୍ତ ହୋଇଯାଇଥାଏ ।

ନଦୀରେ ବିଷାକ୍ତ ପଦାର୍ଥ ମିଶୁଥିବା ଯୋଗୁ ସଂପ୍ରତି ପୃଥିବୀର ୪୦ଭାଗ ନଦୀରେ ଜଳଚର ଜୀବ ବଞ୍ଚିବା ପ୍ରାୟ ସମ୍ଭବ ହୋଇପାରୁ ନାହିଁ । ୩୭ପ୍ରତିଶତ ମାଛ ବର୍ତ୍ତମାନ ବିଲୋପ ହୋଇଯାଇଥିବା ବେଳେ ୬୪ପ୍ରତିଶତ କ୍ରେ- ଫିସ, ୪୦ପ୍ରତିଶତ ଉଭୟଚର, ୬୭ପ୍ରତିଶତ ସାମୁଦ୍ରିକ ଜୀବ ବିଲୋପ ଅବସ୍ଥାରେ ପହଞ୍ଚିଛନ୍ତି ।

ଆଫ୍ରିକାର ପ୍ରସିଦ୍ଧ ହ୍ରଦ ଭିକ୍ଟୋରିଆର ଜଳ ବିଷାକ୍ତ ହେବାପରି ଓଡ଼ିଶାର ଚିଲିକା ହ୍ରଦର ଜଳ ମଧ୍ୟ ବିଷାକ୍ତ ହେବାରେ ଲାଗିଛି । ସେହିପରି ବିଶ୍ୱର ନଦୀସଂପଦ ମଧ୍ୟ ଗୁରୁତର ସଂକଟରେ ପହଞ୍ଚିଛି । ଗଂଗା ଓ ବ୍ରହ୍ମପୁତ୍ର ନଦୀରେ ବିପୁଳ ପରିମାଣର ଭୂତାଣୁ, ବ୍ୟାକ୍ଟେରିଆ ରହିଛି । ଯମୁନା ନଦୀମଧ୍ୟକୁ ଦୈନିକ ୨୦୦ନିୟୁତ ଲିଟର ବିଷାକ୍ତ ଜଳ ଛଡାଯାଉଥିବା ବେଳେ ଦାମୋଦର ନଦୀରେ ୧୦୦ ନିୟୁତ ଲିଟର ବିଷାକ୍ତ ଦ୍ରବ୍ୟ ମିଶୁଛି ।

ପ୍ଲାଷ୍ଟିକ୍ ସଭ୍ୟତାର ଅଂଶ ସ୍ୱାସ୍ଥ୍ୟ ପ୍ରତିଦିନ ପର୍ଯ୍ୟାପ୍ତ ପରିମାଣ ପଲିଥିନ ମାଟିରେ ପକାଯାଉଛି । ପଲିଥିନ ସାଧାରଣତଃ ୧୦୦୦ ବର୍ଷ ପରେ ନଷ୍ଟ ହୋଇଥାଏ ଏବଂ ପଲିଥିନ ଦ୍ୱାରା ଦୂଷିତ ଜଳ ବିଶୋଧିତ ହେବାକୁ ୪୦୦ ବର୍ଷ ଲାଗିଥାଏ । ଏହି କାରଣରୁ ଜଳ ଯେ କେତେ ପରିମାଣର ବିଷାକ୍ତ ହେଉଛି ତାହା ସହଜେ ଅନୁମେୟ ।



# ଜଳ ଅଧିକାର ଓ ବିଭିନ୍ନ ଘୋଷଣାନାମା

**ଜାତିସଂଘ ଘୋଷଣାନାମା (ନଭେମ୍ବର ୨୭,୨୦୦୨):**

"ଜଳର ଅଧିକାର ଏକ ମାନବିକ ଅଧିକାର । ଏହି ଅଧିକାରକୁ ପାଳନ କରିବା ଦିଗରେ ପ୍ରତ୍ୟେକ ରାଷ୍ଟ୍ର ନିରନ୍ତର ଉଦ୍ୟମ କରିବା ଦରକାର ଏବଂ ଏହା ରାଷ୍ଟ୍ରର ଏକ ଦାୟିତ୍ୱବୋଧ । ଜନସାଧାରଣଙ୍କ ବଞ୍ଚିବାର ଅତ୍ୟନ୍ତ ଆବଶ୍ୟକତା ଜଳ ଓ ବାୟୁକୁ ନେଇ ଲାଭଖୋର ଚିନ୍ତାଧାରା ଗ୍ରହଣ କରିବା ଅନୁଚିତ । ସାଧାରଣ ତଥ୍ୟ ଏହା ଯେ ଘରୋଇକରଣ ଏ କ୍ଷେତ୍ରରେ ଲାଗୁହେବା ଅନୁଚିତ । ପ୍ରତ୍ୟେକ ବଜାରସ୍ଥାନରୁ ଆମେ ସ୍ୱଚ୍ଛଜଳ ପାଇବାକୁ ହକ୍‌ଦାର ଏବଂ ଏହା ସତ୍ୟ ଯେ ଜଳ ହେଉଛି ପୃଥିବୀର । ସମସ୍ତ ଜୀବଜନ୍ତୁଙ୍କ ଅଧିକାର ଜଳ ଉପରେ ରହିଛି । ଭବିଷ୍ୟତ ବଂଶଧରଙ୍କ ପାଇଁ ମଧ୍ୟ ଜଳ ଗଚ୍ଛିତ ହେବା ଦରକାର ଏବଂ ବ୍ୟକ୍ତିଗତ ସ୍ୱାର୍ଥ ନିମନ୍ତେ ଏହାକୁ ବ୍ୟାବସାୟିକ ସାମଗ୍ରୀରେ ପରିଣତ କରିବାର ଅଧିକାର କାହା ନିକଟରେ ନାହିଁ । ଆମେ ବିଶ୍ୱାସ କରୁ ଯେ ଜଳ ହେଉଛି ଜୀବନ ରେଖା ଏବଂ ଏହା ଏକ ମୌଳିକ ମାନବିକ ଅଧିକାର ଭାବେ ଘୋଷଣା କରିବା ପାଇଁ ଆମେ ଏକ ଆନ୍ତର୍ଜାତିକ ସମ୍ମିଳନୀ ଡାକିବାର ଆବଶ୍ୟକତା ରହିଛି । ପୃଥିବୀର ପ୍ରତ୍ୟେକ ଜୀବନର ବଞ୍ଚିବାର ଅଧିକାର ରହିଛି ।"

**ବଞ୍ଚିବାର ଅଧିକାର:**

ଜଳର ଇସ୍ତାହାର- (୧୯୯୮, ଲିସବନ) ୧୯୯୮ରେ ବିଶ୍ୱର ବିଭିନ୍ନ ପ୍ରାନ୍ତରରୁ ଆସିଥିବା ଜଳ ଆନ୍ଦୋଳନ କର୍ମୀ ଲିସବନଠାରେ ଏକତ୍ରିତ ହୋଇ ଏକ ଘୋଷଣାନାମା ଜାରି କରିଥିଲେ । ତାହା ହେଉଛି- "ଆମ୍ଭେମାନେ ଆଫ୍ରିକା, ଲାଟିନ ଆମେରିକା, ଉତ୍ତର ଆମେରିକା, ଏସିଆ ଓ ୟୁରୋପରୁ ଆସିଛନ୍ତି । ବିଶ୍ୱର ୫୮୦କୋଟି ଲୋକଙ୍କ ମଧ୍ୟରୁ ୧୪୦କୋଟି ଲୋକ ପାନୀୟ ଜଳ ଅଧିକାରରୁ ବଞ୍ଚିତ ଥିବା ତଥ୍ୟରେ ଆନ୍ଦୋଳିତ ହୋଇ ଆମ୍ଭେମାନେ ପ୍ରତିନିଧି ହିସାବରେ ଏଠାରେ ସମବେତ ହୋଇଛେ । ଏହି ୧୪୦କୋଟି ଲୋକ ପ୍ରାଥମିକ ଭାବେ ବଞ୍ଚିବାର ଅଧିକାରରୁ ବଞ୍ଚିତ । ବର୍ତ୍ତମାନ

ଏହି ସଂଖ୍ୟା ଏତେ ଅଧିକ ଯେ ଆସନ୍ତା ୨୦୨୦ ବେଳକୁ ପୃଥିବୀର ଜନସଂଖ୍ୟା ୮୦୦ କୋଟିରେ ପହଞ୍ଚିବା ବେଳେ ପାନୀୟ ଜଳର ଅଧିକାରରୁ ବଞ୍ଚିତ ହେବାକୁ ଥିବା ଲୋକଙ୍କ ସଂଖ୍ୟା ୩୦୦ କୋଟି ହେବ । ଏହି ଆଶଙ୍କାକୁ ଦୂରେଇବାକୁ ଆମକୁ ଦୃଢ଼ ସଂଗ୍ରାମ କରିବାକୁ ପଡିବ ।

## କୋଚାବାମ୍ବା ଘୋଷଣାନାମା- (ଡିସେମ୍ବର ୮, ୨୦୦୦)

ବିଶ୍ୱରେ ଜଳର ଘରୋଇକରଣ ପ୍ରକ୍ରିୟା ବନ୍ଦ କରିବା ପାଇଁ ବଲିଭିଆର କୋଚାବାମ୍ବା ସହରରେ ଅନେକ ବୁଦ୍ଧିଜୀବୀ ଏକତ୍ରିତ ହୋଇଥିଲେ । କୋଚାବମ୍ବା ସହରରେ ଜଳର ଘରୋଇକରଣ ପ୍ରକ୍ରିୟାର ଚରମ ବିଫଳତା ପରେ ଏଠାରେ କୋଚାବାମ୍ବା ଘୋଷଣାନାମା ଜାରି କରାଯାଇଥିଲା । ଘୋଷଣାନାମା ହେଉଛି- "ବ୍ୟାବସାୟିକ ସଂସ୍ଥା, ପ୍ରତିଷ୍ଠାନଭିତ୍ତିକ ଓ ସରକାରୀ ସ୍ତରରେ ଜଳର ଘରୋଇକରଣ ପ୍ରକ୍ରିୟା ବିରୋଧରେ ଆମେ ଆନ୍ଦୋଳନର ବହୁ ନାୟକ ଓ ନାୟିକା ଏହି ସହରରେ ଉପସ୍ଥିତ ରହିଛୁ । ଆମର ଅଦମ୍ୟ ସାହସ ଓ ବଳିଦାନର ଚେତନା ଆମ କଣ୍ଠରେ ଏହି ସ୍ୱର ଉତ୍ତୋଳିତ କରିଛି । ବଞ୍ଚିବାର ଅଧିକାର ପାଇଁ, ପ୍ରକୃତିକୁ ମର୍ଯ୍ୟାଦା ଦେବା ପାଇଁ, ଆମ ପୂର୍ବପୁରୁଷଙ୍କୁ ଏବଂ ଜନସାଧାରଣଙ୍କୁ ଐତିହାସିକ ସମ୍ମାନ ଦେବା ପାଇଁ, ଆମେ ଜଳର ଅଧିକାର ସାବ୍ୟସ୍ତ କରିବା ପାଇଁ ଆଗେଇ ଆସିଛୁ । ପୃଥିବୀର ଦାନ ଜଳର ବ୍ୟବହାରର ଅଧିକାର ଆମଠାରୁ କେହି ଛଡାଇପାରିବେ ନାହିଁ । ଜଳ ହେଉଛି ପୃଥିବୀର ଏବଂ ପ୍ରତ୍ୟେକ ପ୍ରାଣୀର ଏହାରି ଉପରେ ଅଧିକାର ରହିଛି । ତେଣୁ ପୃଥିବୀର ଜଳକୁ ସଂରକ୍ଷିତ କରିବା ସହ ପ୍ରକୃତି ଏବଂ ଭବିଷ୍ୟତ ବଂଶଧର ପାଇଁ ଏହାର ସୁରକ୍ଷା କରାଯିବା ଦରକାର । ଜଳ ହେଉଛି ମଣିଷର ଏକ ମୌଳିକ ଅଧିକାର । ତେଣୁ ଏହାକୁ ଘରୋଇକରଣ, ବ୍ୟବସାୟୀକରଣ କରାଯାଇପାରିବ ନାହିଁ । ସମସ୍ତ ସରକାରୀ ସ୍ତରରେ ଏହା କାର୍ଯ୍ୟକାରୀ ହେବା ଦରକାର । ଆଞ୍ଚଳିକ ସଂପ୍ରଦାୟ ଏବଂ ସମସ୍ତ ନାଗରିକଙ୍କ ପାଇଁ ସମାନ ଭାବେ ଜଳର ଅଧିକାରର ସୁରକ୍ଷା କରାଯିବା ଉଚିତ । ବିଶ୍ୱ ଗଣତନ୍ତ୍ରକୁ ରକ୍ଷା କରିବା ଦିଗରେ ଏବଂ ଜଳ ସୁରକ୍ଷା କରିବା କ୍ଷେତ୍ରରେ ପୃଥିବୀର ମାନବ ଶକ୍ତି ହିଁ ଏକମାତ୍ର ଚାଳିକା ଶକ୍ତି ।"

## ଆକ୍ରା ଘୋଷଣାନାମା (ମେ ୧୯, ୨୦୦୧)

ଘାନାର ଆକ୍ରାଠାରେ ବିଶ୍ୱର ବିଭିନ୍ନ ପ୍ରାନ୍ତରରୁ ଆସିଥିବା ଜଳ ଅଧିକାର ନେତୃମଣ୍ଡଳୀ ଆକ୍ରା ଘୋଷଣାନାମା ଜାରି କରିଥିଲେ । ଏହି ସମ୍ମିଳନୀ ମେ ୧୬ରୁ ୧୯ଯାଏ ଚାଲିଥିଲା । ଘୋଷଣାନାମା ହେଉଛି:

"ଆମେ ସାଧାରଣ ନୀତି, ବିଶ୍ୱାସ ଓ ନୈତିକତାରେ ଏକମତ ହୋଇ ଏହି ଘୋଷଣାନାମା ଜାରି କରୁଛୁ ଯେ ଜଳ ଏକ ମୌଳିକ ମାନବାଧିକାର । ଧନୀ ଗରୀବ, ନାରୀ ପୁରୁଷ, ଶିଶୁ ଓ ବୟସ୍କ - ସମାଜର ସମସ୍ତ ପିଢ଼ି ପାଇଁ ଜଳର ସମାନ ଅଧିକାର ରହିଛି । ଜଳ ଏକ ସାଧାରଣ ବ୍ୟାବସାୟିକ ଦ୍ରବ୍ୟ ହୋଇପାରିବ ନାହିଁ ବା ହେବା ଅନୁଚିତ । ଏକ ଅର୍ଥନୈତିକ ଦ୍ରବ୍ୟ ପରି ଏହା ବଜାରରେ ବିକା କିଣା କରାଯାଇ ପାରିବ ନାହିଁ । ଜଳ ଏକ ପ୍ରାକୃତିକ ସମ୍ବଳ ଏବଂ ବୈଚାରିକ ଧାରାରେ ଏହା ଆମର ସାଧାରଣ ଐତିହ୍ୟର ଅଂଶ ବିଶେଷ । ଆଜିର ପ୍ରାକୃତିକ ପରିବେଶ ଏବଂ ଭବିଷ୍ୟତ ପାଇଁ ଏହାର ସଂରକ୍ଷଣ ଜରୁରୀ, ଜଳ ଏକ କ୍ରମବର୍ଦ୍ଧମାନ ଦୁର୍ମୂଲ୍ୟ ପ୍ରାକୃତିକ ସମ୍ବଳ ଏବଂ ଆମ ସମାଜର ଓ ଆମ ଦେଶର ସାର୍ବଭୌମତ୍ୱର ନିରାପତ୍ତା ପାଇଁ ଆମେ ପ୍ରତିଶ୍ରୁତିବଦ୍ଧ । ଆଜି ଓ ଆସନ୍ତାକାଲି ପାଇଁ ଏହାର ମାଲିକାନା, ନିୟନ୍ତ୍ରଣ, ବଣ୍ଟନ ଓ ପରିଚାଳନା ସର୍ବସାଧାରଣ ଜାଣିବା ଉଚିତ ।"

## ବିଶ୍ୱଜଳ ଘୋଷଣାନାମା (ଜୁଲାଇ ୧୪, ୨୦୦୧)

Blue Planet Project To Share And Protect The Global Water Commons ଘୋଷଣାନୁଯାୟୀ-

"ଏହି ସତ୍ୟଗୁଡ଼ିକ ସାର୍ବଜନୀନ ଓ ଅଖଣ୍ଡ ବୋଲି ଆମର ବିଶ୍ୱାସ । ପୃଥିବୀର ମଧୁର ଜଳର ବାଣିଜ୍ୟିକ କାରବାର ହୋଇପାରିବ ନାହିଁ । ତେଣୁ ଏହାର ସୁରକ୍ଷା ପ୍ରତି ରାଜନୈତିକ, ସାମାଜିକ ପ୍ରତିଷ୍ଠାନ ଓ ବ୍ୟାବସାୟିକ କ୍ଷେତ୍ରରେ ଧ୍ୟାନ ଦେବା ଦରକାର । ଏହାକୁ ଏକ ଘରୋଇ ସାମଗ୍ରୀ ଭାବେ ଗ୍ରହଣ କରିବା ଅନୁଚିତ । ବିଶ୍ୱର ମଧୁର ଜଳ ଯୋଗାଣ ଆଇନସମ୍ମତ ଭାବେ ଆବଶ୍ୟକ । ଜଳ ଏକ ମୌଳିକ ମାନବିକ ଅଧିକାର ଏବଂ ଏକ ସାମୂହିକ ଦାୟିତ୍ୱ ସଂପନ୍ନତା ।"

## କ୍ୟୋତୋ ଘୋଷଣାନାମା (ମାର୍ଚ୍ଚ ୨୦୦୩):

ଜାପାନର କ୍ୟୋତୋ ଠାରେ ମାର୍ଚ୍ଚ ୨୦୦୩ରେ ଆୟୋଜିତ ଆଦି ଅଧିବାସୀ ଜଳ ଘୋଷଣାନାମା (Indigenous Pepoles Kyoto Declaration)ରେ ଜଳର ଅଧିକାରନେଇ ଏକ ଘୋଷଣାନାମା ଜାରି କରାଯାଇଥିଲା । ଏହି ଘୋଷଣାନାମାରେ ୩ଟି ପ୍ରମୁଖ ବିଷୟ ସ୍ଥାନ ପାଇଛି । ଘୋଷଣାନାମାଟି ହେଉଛି:-

"ଆମ୍ଭେ ବିଶ୍ୱର ବିଭିନ୍ନ ପ୍ରାନ୍ତରରୁ ବିଭିନ୍ନ ଅଧିବାସୀ ଏହି ସମ୍ମିଳନୀରେ ଯୋଗ ଦେଇଛେ । ପୃଥିବୀ ମାତା ଓ ଭବିଷ୍ୟତ ବଂଶଧରଙ୍କ ସଂପର୍କ ପ୍ରସଂଗରେ ଆମେ

ଏଠାରେ ସ୍ୱର ଉତ୍ତୋଳନ କରୁଛୁ । ପୃଥିବୀର ଜଳ ସଂପଦ, ପାରମ୍ପରିକ ଜମିର ସୁରକ୍ଷା ପାଇଁ ଆମେ ସଂଗ୍ରାମରତ ।

ବିକାଶଶୀଳ ରାଷ୍ଟ୍ରରେ ଜଳର ଘରୋଇକରଣ ପାଇଁ ବିଶ୍ୱବ୍ୟାଙ୍କ, ଆନ୍ତର୍ଜାତିକ ମୁଦ୍ରାପାଣ୍ଠି, ଆଞ୍ଚଳିକ ବ୍ୟାଙ୍କ ଯଥା- ଏସୀୟ ବିକାଶ ବ୍ୟାଙ୍କ (Asian Development Bank), ଆଫ୍ରିକୀୟ ବିକାଶ ବ୍ୟାଙ୍କ(African Development Bank), ଆନ୍ତଃ-ଆମେରିକୀୟ ବିକାଶ ବ୍ୟାଙ୍କ(Inter-American Development Bank), ପ୍ରଭୃତିଙ୍କ ଉଦ୍ୟମକୁ ଆମେ ବିରୋଧ କରୁଛୁ । ନୂତନ ଋଣର ସର୍ତ୍ତାବଳୀ ହିସାବରେ ଜଳକୁ ସର୍ତ୍ତ ହିସାବରେ ରଖାନଯାଉ । ବିଶ୍ୱ ବାଣିଜ୍ୟ ସଂଗଠନରେ ଗାଟ୍‌ସ ଚୁକ୍ତି ସମୂହରେ ଜଳ ସେବାର ଉଦାରୀକରଣ କରିବା ପାଇଁ ୟୁରୋପୀୟ ୟୁନିଅନର ପ୍ରଚେଷ୍ଟାକୁ ଆମେ ବିରୋଧ କରୁଛୁ ।”



# ଜଳ ଅଧିକାର ବନାମ ନ୍ୟାୟ

ମାନବ ପରିବେଶ ସଂକ୍ରାନ୍ତ ଜାତିସଂଘର ଷ୍ଟକହୋମ ଘୋଷଣାନମା (Stockholm Declaration of United Nations on Human Development) ରେ କୁହାଯାଇଥିଲା ଯେ "The natural resources of the earth including air, water, land, flora & fauna and especially representative samples of natural system, must be safeguarded for the benefit of present and future generations through careful planning or management, as appropriate, xxx Nature conservation including wildlife must therefore receive importance in planning for economic development."

ସେହିପରି ମେସର୍ସ ହିନ୍ଦ୍ ଷ୍ଟୋନ୍ ବନାମ ତାମିଲନାଡୁ ସରକାର ମାମଲା (AIR 1981 SC 711)ରେ ମାନ୍ୟବର ସୁପ୍ରିମକୋର୍ଟ ଦର୍ଶାଇଥିଲେ ଯେ "Rivers, forests, minerals and such other resoures constitute a nations natural wealth. These resources are not to be frittered away and exhausted by any one generation to develop and conserve the natural resoures of the nation in the best possible way. It is in the interest of mankind. It is in the interest of the nation.

ସେହିପରି ରିଓ-ଡ଼ି-ଜେନେରୋ ସମ୍ମିଳନୀରେ ମଧ୍ୟ ୟୁନେସ୍କୋ ପକ୍ଷରୁ କୁହାଯାଇଥିଲା ଯେ "Every generation should leave water, air and soil resources as pure and unpolluted as and when it came to earth. Each generation should leave undiminished all the species of minerals it found existing on earth."

ଦେଶରେ ପାନୀୟ ଜଳ ସଂପଦର ପରିମାଣ ଦିନକୁ ଦିନ କମି ଆସୁଥିବା ବେଳେ ବିଦେଶୀ ବହୁରାଷ୍ଟ୍ରୀୟ ଓ ସ୍ୱଦେଶୀ ବହୁରାଷ୍ଟ୍ରୀୟ କମ୍ପାନୀଗୁଡ଼ିକ ହାତରେ ଜଳ ବଣ୍ଟନର ଅର୍ଥନୈତିକ ଅଧିକାର ପ୍ରଦାନ କରିବା ଘଟଣା ମାନବ ସମାଜ ପ୍ରତି ଏକ ଅପମାନ । ଜଳ, ବାୟୁ, ମାଟି ମହାଜାଗତିକ ସଂପଦ । ହଜାର ହଜାର କୋଟିବର୍ଷରେ ଏହି ସଂପଦ କେବଳ ମାନବ ନୁହେଁ ସମଗ୍ର ଜୀବସତ୍ତାର ଉଦ୍ଭବ ପାଇଁ ଦାୟୀ ହୋଇଥିବା ବେଳେ ସେଗୁଡ଼ିକର ବ୍ୟବସାୟୀକରଣ ଅତ୍ୟନ୍ତ ଦୋଷାବହ । ଜୀବନର ବ୍ୟବସାୟ ବୋଲି ଏହାକୁ କୁହାଯାଇପାରେ ।

ଡ୍ୱାଇଟ ଏଷ୍ଟିନହୋର୍‌ଙ୍କର ରାଷ୍ଟ୍ରପତିତ୍ୱ ସମୟରେ ଆମେରିକାରେ କୋକାକୋଲା କମ୍ପାନୀକୁ ମାତ୍ରାଧିକ ସୁଯୋଗ ଦିଆଯାଇଥିଲା । ଏପରିକି କୋକାକୋଲା ପକ୍ଷରୁ କୁହାଯାଇଥିଲା ଯେ 'Next to wivies and sweet hearts and letters from home, among the things our fighting men overseas menti on most is Cocacola'. ଏଷ୍ଟିନହୋର୍ ଆମେରିକାର କମାଣ୍ଡର୍ ଜେନରାଲ୍ ଥିବାବେଳେ (ପରେ ସେ ରାଷ୍ଟ୍ରପତି ହୋଇଥିଲେ) ସେ କୋକାକୋଲା କମ୍ପାନୀକୁ ଅବାଧ ସୁଯୋଗ ଦେଇଥିଲେ ଏବଂ ୮ଟି କୋକାକୋଲା ପ୍ଲାଣ୍ଟ ପ୍ରତିଷ୍ଠା କରିବା ପାଇଁ ଆଦେଶ ଦେଇଥିଲେ ।

ସମସ୍ତ ସମୁଦ୍ରରେ ୩,୧୭,୦୦୦,୦୦୦ ଘନମାଇଲ ଜଳ (୯୭.୨୪%) ଥିବାବେଳେ ବରଫାବୃତ ଅଞ୍ଚଳରେ ୭,୦୦୦,୦୦୦ ଘନମାଇଲ(୨.୧୪%), ସାଗରରେ ୨୫,୦୦୦ ଘନମାଇଲ (୦.୦୦୮%), ମାଟି ମଧ୍ୟରେ ୧୬,୦୦୦ ଘନମାଇଲ (୦.୦୦୫%), ନଦୀରେ ୩୦୦ ଘନମାଇଲ (୦.୦୦୦୧%) ଜଳ ଅଛି । ମନୁଷ୍ୟ ବ୍ୟବହାର ଉପଯୋଗୀ ଜଳ ପରିମାଣ ହେଉଛି ୨,୦୦୦,୦୦୦ ଘନମାଇଲ ଅର୍ଥାତ ୦.୬୧% । ତେଣୁ ପାନୀୟ ଜଳର ପରିମାଣ ପୃଥିବୀରେ କେତେ କମ୍ ତାହା ସହଜେ ଅନୁମେୟ । ଯେଉଁ ହାରରେ ଜଳ ଦୂଷିତ ହେଉଛି ବା ନଷ୍ଟ ହେଉଛି ତାହା ଯଦି ଏହି ହାରରେ ଚାଲେ ତେବେ ଆସନ୍ତା ୨୫ବର୍ଷ ମଧ୍ୟରେ ମୁନ୍ଦିଏ ସଫା ଜଳ ମିଳିବା ବି କଷ୍ଟକର ହୋଇପଡ଼ିବ । ମୁନାଫା ଅର୍ଜନକାରୀ କମ୍ପାନୀମାନେ ପ୍ରଚୁର ଜଳ ଭୂଗର୍ଭରୁ ଟାଣୁ ଥିବାରୁ ଏହାର ପ୍ରଭାବ ମଧ୍ୟ ସାମଗ୍ରିକ ଜଳ ସଂପଦ ଉପରେ ପଡୁଛି ।

କଳକାରଖାନା ସହ କରାଯାଉଥିବା ଅନେକ ଚୁକ୍ତି କ୍ଷେତ୍ରରେ ଦେଖାଯାଇଛି ଯେ ସେମାନେ ଯେତିକି ପରିମାଣର ଜଳ ବ୍ୟବହାର କରିବା ପାଇଁ ଚୁକ୍ତି କରୁଛନ୍ତି ତାହା ନାମକୁ ମାତ୍ର ଏବଂ ତା'ଠାରୁ ଯଥେଷ୍ଟ ଅଧିକ ପରିମାଣ ଜଳ ସେମାନେ ବ୍ୟବହାର କରୁଛନ୍ତି । ଏହା ବ୍ୟତୀତ ସେମାନେ ଜଳବିଶୋଧନ କରିବା ପାଇଁ ମଧ୍ୟ ଯେଉଁ ପ୍ରତିଶ୍ରୁତି ଦେଇଥାନ୍ତି ତାହା ପାଳନ କରିନଥାନ୍ତି ।

ଏମ.ସି ମେହେଟ୍ଟା ବନାମ କମଲନାଥ ଘଟଣାରେ ମଧ୍ୟ ସୁପ୍ରିମ କୋର୍ଟ ଯେଉଁ ରାୟ ଦେଇଥିଲେ ତାହା ଅନୁକରଣୀୟ । ତାହା ହେଉଛି:-

*The notion that public has a right to expect certain lands and natural areas to retain their natural characteristic is finding its way into the law of the land. The ancient Roman Empire developed a legal theory known as the "Doctrine of the Public Trust".* ***This Doctrine primarily rests on the principle that certain resources like air, sea, water and the forests have such a great importance to the people as a whole that it would be wholly unjustified to make them a subject of private ownership.*** *The said resources being a gift of nature, they should be made freely available to everyone irrespective of the status in life. The doctrine enjoins upon the Government to protect the resources for the enjoyment of the general public rather than to permit their use for private ownership or commercial purposes. Though the public trust doctrine under the English common law extended only to certain traditional uses such as navigation, commerce and fishing, the American Courts in recent cases expanded the concept of the public trust doctrine. The observations of the Supreme Court of California in Mono Lake case clearly show the judicial concern in protecting all ecologically improtant lands, for example fresh water, wetlands or riparian forests. The observations therein to the effect that the protection of ecological values is among the purposes of public trust, may give rise to an argument that the ecology and the environment protection is a relevant factor to determine which lands, waters or airs are protected by the public trust doctrine. The Courts in United States are finally beginning to adopt this reasoning and are expanding the public trust to encompass new types of lands and waters. There is no reason why the public trust doctrine should not be expanded to include all ecosystems operating in our natural reasources. Our legal system-based on English common law-includes the public trust doctrine as part of its jurisprudence.* ***The State is the trustee of all natural resources which are by nature meant for public use and enjoyment. Public at large is the beneficiary of the sea-shore, running waters,*** *airs, forests and ecologically fragile lands. The State as a trustee is under a legal duty to protect the natural resources. These resources meant for public use cannot be converted into private ownership. Thus the Public Trust doctrine is a part of the law of the land.*

## ସମୁଦ୍ରର ଶୋକ ଓ ବର୍ଷାର ବାରୁଦ:

ପୃଥିବୀର ଅମୂଲ୍ୟ ସଂପଦ ସାଗର ଓ ସମୁଦ୍ର ଏବେ ବିଷାକ୍ତ ଜଳର କ୍ଷେତ୍ର । କୋଟି କୋଟି ଶିଳ୍ପ କାରଖାନାର ଦୂଷିତ ଜଳ ସର୍ବଶେଷରେ ସମୁଦ୍ରରେ ଯାଇ ପଡୁଥିବାରୁ ପ୍ରତିବର୍ଷ ୨ଲକ୍ଷ ଘନମାଇଲ ଜଳ ସଂପୂର୍ଣ୍ଣ ବିଷାକ୍ତ ହୋଇପଡୁଛି ।

ନଦୀ ମଧ୍ୟ ଦେଇ ସମୁଦ୍ର ଭିତରକୁ କାଡ଼ମିୟମ, କ୍ରୋମିୟମ, ପ୍ରଭୃତି ଯାଉଥିବାରୁ ସମୁଦ୍ର ଜଳ ଅତ୍ୟନ୍ତ ବିଷାକ୍ତ ହୋଇଯିବାରେ ଲାଗିଛି । ସମୁଦ୍ରରେ ବସବାସ କରୁଥିବା ଜଳଚର ଜୀବ ମଧ୍ୟରୁ ଏହି କାରଣରୁ ପ୍ରାୟ ୫୦୦୦ ପ୍ରଜାତିର ବିଲୋପ ଘଟିଲାଣି ।

ଷ୍ଟକ୍‌ହୋମ୍‌ରେ ଆୟୋଜିତ ବିଶ୍ୱ ସମ୍ମିଳନୀରେ ସମୁଦ୍ର ବିଷୟରେ ଏକ ଘୋଷଣାନାମା ପ୍ରକାଶ ପାଇଥିଲା । ଏଥିରେ କୁହାଯାଇଥିଲା ଯେ ସମୁଦ୍ରକୁ ଦୂଷିତ କରିବା ସମସ୍ୟା ଏକ ବିଶ୍ୱ ସମସ୍ୟା । ଏହି ଘୋଷଣାନାମାରେ ସମୁଦ୍ରକୁ ରକ୍ଷା କରିବା ପାଇଁ ୪୮ଟି ରାଷ୍ଟ୍ର ସ୍ୱୀକାର କରିଥିଲେ ମଧ୍ୟ ଏହା କାର୍ଯ୍ୟକାରୀ ହୋଇ ନଥିଲା ଏବଂ ଦିନକୁ ଦିନ ସମୁଦ୍ରଜଳ ଅଧିକ ହେବାରେ ଲାଗିଥିଲା । ୧୯୭୪ ପ୍ୟାରିସ୍ ସମ୍ମିଳନୀରେ ମଧ୍ୟ ସମୁଦ୍ର ସୁରକ୍ଷା ପାଇଁ ଏକ ଆହ୍ୱାନ ଦିଆଯାଇଥିଲା ଏବଂ ସମୁଦ୍ର ମଧ୍ୟକୁ ତେଜଷ୍କ୍ରିୟ ପଦାର୍ଥ ନିର୍ଗତ ନକରାଇବାକୁ ପରାମର୍ଶ ଦିଆଯାଇଥିଲା । ମାତ୍ର ଏହା ବି କାର୍ଯ୍ୟକାରୀ ହୋଇପାରି ନଥିଲା ।

ଆରବ ଉପସାଗର ମଧ୍ୟକୁ ପ୍ରଚୁର ପରିମାଣର ଦୂଷିତ ତୈଳ ଛଡ଼ାଯାଉଥିବାରୁ ଏହି ଜଳ ମଧ୍ୟ କ୍ରମଶଃ ବିଷାକ୍ତ ହୋଇ ଯାଇଛି । ୧୯୭୮ରେ କୁଏତ ଆକସନ ପ୍ଲାନ ଗଠିତ ହୋଇଥିଲେ ମଧ୍ୟ ଇରାନ୍-ଇରାକ୍ ମଧ୍ୟରେ ଯୁଦ୍ଧ ବିବାଦ ଯୋଗୁଁ ଏହି ଯୋଜନା କାର୍ଯ୍ୟକାରୀ ହୋଇପାରିନାହିଁ । ସେହିପରି ଅନେକ ସାଗର ଓ ମହାସାଗରରେ ପ୍ରଚୁର ପରିମାଣରେ ଦୂଷିତ ଜଳ ମିଶୁଥିବାରୁ ସମୁଦ୍ର ମଧ୍ୟରେ ବସବାସ କରୁଥିବା ଅନେକ ବିରଳ ପ୍ରଜାତି ଲୋପ ହୋଇଯାଉଛନ୍ତି ।

ବାୟୁମଣ୍ଡଳରେ ସଲଫର୍ ଡ଼ାଇଅକ୍‌ସାଇଡ୍ ଓ ନାଇଟ୍ରୋଜେନ୍ ଅକ୍‌ସାଇଡ୍ ପରିମାଣ ବୃଦ୍ଧି ହେଉଥିବାରୁ ବର୍ଷା ଜଳ ମଧ୍ୟ ବିଷାକ୍ତ ହୋଇଯାଇଥାଏ । ଯାହାକୁ ଏସିଡ୍ ବର୍ଷା କୁହାଯାଏ । ବର୍ଷା ହେବା ପୂର୍ବରୁ ଏହି ବିଷାକ୍ତ ଗ୍ୟାସ୍ ହଜାର ହଜାର କିଲୋମିଟର ବ୍ୟାପୁ ଥିବାରୁ ପୃଥିବୀର ଯେକୌଣସି ଦେଶରୁ ନିର୍ଗତ ଏହି ଗ୍ୟାସ ପୃଥିବୀର ଯେକୌଣସି ଅଞ୍ଚଳକୁ ଚାଲିଯିବାର ଆଶଙ୍କା ଥାଏ । ଏସିଡ଼ ବର୍ଷା ଯୋଗୁ ଜୀବଜଗତ ଓ ସବୁଜିମା ବିପଦ ଉପରକୁ ଆସିଥାଏ । ସମଗ୍ର ୟୁରୋପ, ଆଫ୍ରିକା, ଏସିଆ ଇତ୍ୟାଦି ମହାଦେଶରେ ଏସିଡ଼ ବର୍ଷା ଗତ ୫୦ବର୍ଷ ଧରି ହୋଇଆସୁଛି ।

ଏପରିକି କେନ୍ଦ୍ରୀୟ ୟୁରୋପରେ ୧୦୦ ପ୍ରତିଶତ ବିଷାକ୍ତ ଏସିଡ଼ ବର୍ଷା ହୋଇଥିବାର ନଜର ରହିଛି ।

ପୃଥିବୀର ବିଭିନ୍ନ ଦେଶ ବାୟୁମଣ୍ଡଳରେ ଯେତିକି ପରିମାଣର ବିଷାକ୍ତ ଗ୍ୟାସ୍ ଛାଡ଼ିଥାନ୍ତି ସେମାନଙ୍କ ମଧ୍ୟରୁ କେବଳ ଆମେରିକା ୩୫ପ୍ରତିଶତ ଗ୍ୟାସ୍ ଛାଡ଼ିଥାଏ । ଆମେରିକାରେ ଥିବା ପାୱାର ପ୍ଲାଣ୍ଟ୍‌ଗୁଡ଼ିକରୁ ହିଁ ୮୦ ପ୍ରତିଶତ ସଲ୍‌ଫର୍ ଡ଼ାଇଅକ୍‌ସାଇଡ଼୍ ନିର୍ଗତ ହୋଇ ବାୟୁମଣ୍ଡଳରେ ମିଶିଥାଏ । ଏସିଡ଼ ବର୍ଷା ଯୋଗୁ ସୁଇଡ଼େନ୍‌ର ୫୦୦୦ ହ୍ରଦ/ପୋଖରୀ ବିଷାକ୍ତ ହୋଇଯାଇଛି । ନରୱେର ୧୩୦୦୦ବର୍ଗ କିଲୋମିଟର ବ୍ୟାପି ହ୍ରଦ ବିଷାକ୍ତ ହୋଇଯାଇଛି । ଆମେରିକାର ଆଡ଼ିରୋଣ୍ଡାକ ପର୍ବତ ବୃକ୍ଷଶୂନ୍ୟ ହେବା ମୂଳରେ ଏସିଡ଼ ବର୍ଷା ହିଁ ଦାୟୀ । ଆମେରିକାର ଉପର ମିନିସୋଟାରେ ଏସିଡ଼ ବର୍ଷା ଯୋଗୁ ୭୫ଭାଗ ଜଳ ବିଷାକ୍ତ ହୋଇଯାଇଛି ।

ଏକ ହିସାବରୁ ଜଣାଯାଇଛି ଯେ ଏସିଡ଼ ବର୍ଷା ଯୋଗୁ ପୃଥିବୀରେ ବାର୍ଷିକ ୧୦୦୦ କୋଟି ଡ଼ଲାର ମୂଲ୍ୟର ସଂପତ୍ତି ନଷ୍ଟ ହୋଇଥାଏ । ବ୍ରିଟେନ୍‌ରେ ଏସିଡ଼୍ ବର୍ଷା ଯୋଗୁ ବାର୍ଷିକ ପ୍ରାୟ ୫କୋଟି ଡ଼ଲାର ମୂଲ୍ୟର ମାଛ, ଖଣିଜ ପଦାର୍ଥ, ସମୁଦ୍ର ଜାତ ସାମଗ୍ରୀ, ବୃକ୍ଷଲତା, ଫସଲ ନଷ୍ଟ ହୋଇଥାନ୍ତି । ଭାରତରେ ମଧ୍ୟ ଅନେକ ସ୍ଥାନରେ ଏସିଡ଼୍ ବର୍ଷା ହେଉଛି ଏବଂ ବାର୍ଷିକ କ୍ଷତିର ମୂଲ୍ୟ ୨କୋଟି ଡ଼ଲାର ବୋଲି ହିସାବ କରାଯାଇଛି ।

ଏସିଡ଼୍ ବର୍ଷା ଯୋଗୁ ଚର୍ମ କର୍କଟ ରୋଗ ମଣିଷ ଓ ଜୀବଜନ୍ତୁ ଶରୀରରେ ଦେଖାଯାଏ । ଆମେରିକାରେ ପ୍ରତିବର୍ଷ ୫୦୦୦ ଲୋକ ଏହି ରୋଗରେ ମରୁଥିବା ବେଳେ ଭାରତରେ ୪୦୦ ଲୋକ ମରିଥାନ୍ତି ।

ବାୟୁମଣ୍ଡଳରେ କାର୍ବନ ଡ଼ାଇଅକସାଇଡ଼ ଗ୍ୟାସ ପରିମାଣ ମଧ୍ୟ ଆଶାତୀତ ବୃଦ୍ଧି ପାଇଛି । ଫଳରେ ଅନେକ ପ୍ରକାର ପରିବେଶଗତ ସଂକଟ ସୃଷ୍ଟି ହେଉଛି ।

ପ୍ରଚୁର ପରିମାଣର ବିଷାକ୍ତ ଗ୍ୟାସ୍ ବାୟୁମଣ୍ଡଳରେ ମିଶୁଥିବାରୁ ବିଶ୍ୱରେ ତାପମାତ୍ରା କ୍ରମାଗତ ବୃଦ୍ଧି ପାଇବାରେ ଲାଗିଛି । ବିଶ୍ୱ ତାପମାତ୍ରାରେ ଯଦି ଆକସ୍ମାତ ୨ ଡିଗ୍ରୀ ସେଲ୍‌ସିୟସ୍ ବୃଦ୍ଧିପାଏ ତେବେ ପଶ୍ଚିମ ଆଣ୍ଟାର୍କଟିକାରେ କଠିନ ଅବସ୍ଥାରେ ଥିବା ବରଫ ତରଳିବ ଯଦ୍ୱାରା ସମୁଦ୍ର ଜଳସ୍ତର ୫ମିଟର ଉପରକୁ ଉଠିବ । ଏହାଦ୍ୱାରା ପ୍ରାୟ ୧୦୦କୋଟି ଲୋକ କ୍ଷତିଗ୍ରସ୍ତ ହେବାର ଆଶଙ୍କା ରହିଛି । ତେଣୁ ଜଳପରି ଏକ ପବିତ୍ର ପଦାର୍ଥର ସାନ୍ନିଧ ଯେପରି ଜୀବଜଗତକୁ ପାଳି ଆସିଛି ସେପରି ଏହି କୋପରେ ଜୀବଜଗତ ଧ୍ୱଂସ ହେବାର ସମ୍ଭାବନା ରୁ ରକ୍ଷା ପାଇବା ପାଇଁ ସାମୂହିକ ଭାବେ କାର୍ଯ୍ୟପନ୍ଥା ଗ୍ରହଣ କରିବା ଜରୁରୀ ହୋଇପଡ଼ିଛି ।

□□□

